# କବିତା କ୍ରମ

## ହେ' ଈଶ୍ୱର

(୧)

ମୁଁ ନିଜକୁ ସମର୍ପି ସାରିଛି
ତୁମ ବଳୟରେ
ଆଲିଂଗନ କରିବ କି ଫିଂଗି ଦେବ
ଆଉ ଏକ ଜନ୍ମକୁ
ବିନା ଆଦରରେ ?

ତୁମେ ଯାହାବି କରିବ କର,
ତୁମ ଅସୀମ ଶକ୍ତିରେ
ଜର୍ଜରିତ ଦୁଃଖଂକୁ ମୋର କିଂତୁ
ସାଉଁଟି ନେବ ପରମ କରୁଣାରେ।

ସୀମାହୀନ କରିବନି କେବେ
ଏ ଜନ୍ମକୁ ମୋର
ମୁକ୍ତିଦେବ ଅତି ସହଜରେ।

ଧୂପ, ଦୀପ, ନଇବେଦ୍ୟ କିଛି ନୁହେଁ ମୋର
ଜୀବନ କି ଏ ଦେହ ବି ନୁହେଁ
ଯାହାଖାଲି ସୁରକ୍ଷିତ ଆତ୍ମା
ସାଇତା ରହିଛି ତୁମ ଉଦ୍ଦେଶ୍ୟରେ।

(୨)

ବିତ୍ତୁ, ଆଉ କିଛି ମୁହୂର୍ତ୍ତ
ଏ ଧୂସର ଖୋଳପାରେ
ତୁମକୁ ସଂପୂର୍ଣ୍ଣ ବୁଝିବା ଜାଣିବା ଭିତରେ।

ତୁମ ପାଇଁ କବିତାଟେ ଗଢ଼ିବା ଯାଏଁ
ଆତ୍ମା ମୋର ସୁରକ୍ଷିତ ଥାଉ
ଏହି ସରି ଚାଲିଥିବା ଦେହ ଦେଉଳରେ।

ମାଟିରେ ମିଶିବା ଆଗରୁ ଦିଅ ଶକ୍ତି ମୋତେ
ତୁମ ଉଦ୍ଦେଶ୍ୟରେ ମଂତ୍ରର ମହକ କିଛି
ଉଚ୍ଚାରିତ ହେଉ, ଜୀବନ ବି ବିତ୍ତୁ
ଶ୍ରବଣ ଓ ମନନ ବି ହେଉ।

ପୂର୍ବରୁ ଏତେ ଜନ୍ମ ସରିସରି ଗଲା
ମୋ ଓଠେ ତୁମ ମଂତ୍ରର ମାଳିକା
ତୁମକୁ ଛୁଇଁଲାନି ବୋଧେ
ଏଣୁ ଏତେ ଦେହ ଯାହା ଛାଡିବାକୁ ହେଲା।

ଯେତେସବୁ ଖୋଜାଲୋଡ଼ା
କୂଳକୁ ଲାଗିବା ଚେଷ୍ଟାରେ
ଜୀବନ ଏବେ ମଝି ଦରିଆରେ
ବିତ୍ତୁ, ଆଉ କିଛି ମୁହୂର୍ତ୍ତ
ଏ ଦେହର ଖୋଳପାରେ।

(୩)

ଜୀବନ ଜିଇଁବା ଭିତରେ କେତେ ଛଂଦ,
କେତେ ଛଂଦପାତ
ନିତି ନୂଆ ଦୁର୍ଘଟଣାଂକ ଶୋଷ,
ଯେତେସବୁ ଘଟଣା କି ଦୁର୍ଘଟଣାରେ
ବିତୁଥିବା ସଂଜ ଓ ସକାଳ
ଷାଠିଏ, ସତୁରୀ କି ନବେ ଗୋଟେ ପୂରିଗଲେ
ସବୁକିଛି ମାଟିରେ ସମାହିତ।

ଦେହକୁ ପଛକରି ଯାଉଥିବା ଆତ୍ମା,
ଆଶ୍ରୟ ଖୋଜିନିଏ
ନିର୍ବେଦ ପାଲଟି ଯାଏ
ଛାଡ଼ି ଆସିଥିବା ଦେହ।

କ୍ରମଶଃ ଜୀବନ ବିସ୍ମୃତି ପାଲଟେ
ଏତେସବୁ ମୁହୂର୍ତ୍ତଂକ ସହ ସାଲିଶ କଲାପରେ।

ସେ ଛାଡି ଯାଇଥିବା ଅସୁମାରି ସଂପର୍କମାନେ ବି
ଧିରେ ଧିରେ ପାଶୋରି ଆସଂତି,
ସମୟ ବଢ଼େ
ସେମାନେ ବି ମାଟିମୁହାଁ ରାସ୍ତା ଖୋଜଂତି।

ମାଟି ଭିତରେ ସଂପର୍କକୁ ଖୋଜିବାବେଳେ
ସବୁକିଛି ଅଂଧାର ହେଇସାରିଥାଏ
ଯେତେସବୁ ଶବଂକର ଶୋଷ
କ୍ରମଶଃ ମେଂଟିସାରିଥାଏ।

(୪)

କିଏ ଯଦି ଥରେ କହିଯାଆଂତା
ଦେହରୁ ଆତ୍ମା ଛାଡ଼ିଯିବା ପରେ
ନୂଆଘର କେଉଁଠି ଗଢ଼ିବ
ତେବେ ପ୍ରତିକ୍ଷଣ ଦହଗଂଜ ପ୍ରାଣକୁ
କରିହୁଅଂତା ମୁକ୍ତ ଓ ଆଶ୍ୱସ୍ତ ।

ତା'ପରେ ଦେଖଂତି କିଏ କେତେ ଖେଳୁଆଡ଼
ଘଟଣା ଦୁର୍ଘଟଣାମାନଂକୁ
ପ୍ରଶସ୍ତ ରାସ୍ତାରେ ଯିବାକୁ ଦିଅଂତି,
ଏ ଜନ୍ମର ସବୁ ପାପଂକୁ
ସଜେଇ ରଖନ୍ତି କ୍ରମିକ ସଂଖ୍ୟାରେ ।

ନୂଆଘର ଗଢ଼ିବା ପୂର୍ବରୁ ସବୁ ଆସବାବପତ୍ର
ଖରିଦ କରି ଧୋଇଦେଇ ନିର୍ମଳ କରଂତି
ଫୁଲ ଓ ଘାସରେ ପାଦକୁ ବଢ଼ାଂତି ।

ଏତେସବୁ କ୍ଲେଶ ପରେ
ଆଉ ବା କ'ଣ ବାକି ରହିଯାଏ ?

ଚଉରାଅଶୀ ଲକ୍ଷରେ ଘୂରିବା ଅବା
ବାଟେଘାଟେ ଅଟକିଯିବା
ସବୁଯଦି ନିୟତି ନିର୍ଦ୍ଦିଷ୍ଟ
କାମନା ଓ ସଂଭୋଗର ଚକ୍ରରେ ଘୂରିବା
ଆଉ କେତେକାଳ
ପାପ ଆଉ ପ୍ରତାରଣାର ସମୁଦ୍ର ଗର୍ଭରେ ।

(୫)

ଆମ୍ଭମାନେ ଏଠାରେ ବିଚରଣ କରଂତି
ତୁମ ଇସାରାରେ।
ପ୍ରତି ଆତ୍ମାର ଖେଳ ତୁମେ ଖେଳୁଥାଅ
ସଭିଂକ ଅଲକ୍ଷରେ।

ଏଣୁ ତ ଏତେ କଳରବ ଶୁଭେନି କାହାକୁ,
ଯା'ଖାଲି ଆଗରୁ ଘେନିଥିବା ଜୀବନ ଯଂତ୍ରଣା
କେମିତିବା ଏତେ ଶୀଘ୍ର ଶେଷ ହୋଇଯିବ ?

ଆପେ ଅପସରି ଯାଉଥିବା ଘଟଣାମାନଂକୁ ନେଇ
ଏତେ କାହିଁକି ଶୋକ ଓ ସଂତାପ
ଆଜିର ଏ ଦୁଃଖ କାଲିକୁ ନଥିବ।

ସୁଖ-ଦୁଃଖ, ଲାଭ-ହାନୀ, ଜୟ-ପରାଜୟ
ହିସାବ ଖାତାରେ ଗୁଂଥି ହେଉଥିବ,
ଏଣୁ ପ୍ରତିଟି କ୍ରିୟା ଓ ପ୍ରତିକ୍ରୀୟାରେ
ନିର୍ବିକାର ତୁମେ ଅସୀମ ପୁରୁଷ।

(୬)

ଖୁବ୍ ବେଳ ଗଡ଼ି ନଯାଏ ଯେମିତି
ପାଖକୁ ନେବାରେ,
ତୁମଗଳା ପାଇଁ ଗୁଂଥୁଥିବା ମାଳାରେ
ଫୁଲଟିଏ ହୋଇ ଗୁଂଥୀ ହେବାରେ।

ତୁମ ପାଇଁ କବିତାଟେ ଲେଖିସାରିବା ପରେ
ମୁହଁମୋଡି ଫିଂଗି ନ ଦିଅ ଯେମିତି
ଆଉ ଏକ ଜନ୍ମକୁ।

ଏଣୁ ତା'ପୂର୍ବରୁ ପ୍ରାର୍ଥନା ମୋର
ଫୁଲଟିଏ କରି ପିନ୍ଧି ନିଅ ମତେ ଗଳାରେ।

ସକାଳର ଆଳତି ହେବା ପୂର୍ବରୁ
ସଂଜଦୀପ ଜଳିବା ଆଗରୁ
ତୋଳିନିଅ ମୋତେ,
ନଚେତ
ଆଉ ଏକ ଅସହଣୀ ସକାଳ ଓ ସଂଜକୁ
ଅପେକ୍ଷା କରିବାକୁ ହେବ।

(୭)

ତୁମର ଅପରୂପ କାଂତି ମୋର
କବିତା ରୂପ ନିଏ,
ଓଠ ତଳେ ଶବ୍ଦ ସବୁ ଉଚ୍ଚାରିତ ହୁଏ,
ମନତଳୁ ଯେତେସବୁ ପାଣିଚିଆ
କବି ଅହଂକାର ଲିଭିଲିଭି ଯାଏ।

ହେ' ମହାକବି
ତୁମେ ହିଁ ତ କବିତ୍ୱର ମହାଦୀପଟିଏ
ଯା'ଦେହରେ ମୁଁ ନିଥର ଶିଖାଟେ।

ପ୍ରଜ୍ୱଳିତ ଅସ୍ତିତ୍ୱକୁ ମୋର
ହୋମାଗ୍ନିରେ ପରିଣତ କରେ,
ଅଗ୍ନିଶିଖା ତେଜୋଦୀପ୍ତ କରିବାକୁ ଯାଇ
ତା' ଦେହରେ ଶବ୍ଦ ଓ ଆବେଗରେ
ଘିଅ ଯେତେ ଢ଼ାଳେ।

(୮)

ଆଉ ଜମାରୁ ଭଲ ଲାଗୁନି ଏ ଧୂଳିଘର ଖେଳ,
ତୁମମୟ ପୃଥିବୀର ରସ ଯେ ଜାଣି ସାରିଲାଣି
ଏତେ ଟିକେ ଚାଖିଦେବାରେ
ଭରପୂର ଆନଂଦକୁ ମାପି ସାରିଲାଣି,
ସେ ଅବା ଅଟକି କି ପାରେ
ଏ ଧୂଳିଘର ଖେଳେ ?

ଧୂଳିଘର କଷ୍ଟ ଦିଏ,
ତୁମମୟ ପୃଥିବୀକୁ ଆସିବାକୁ ବାଧା ହୁଏ
ମୁଁ ଜାଣେ,
ଏସବୁ କେବଳ ତୁମରି ମାୟା..
ଏଣୁ ଅପେକ୍ଷା ମୁଁ କରିଛି
ବାକି ଅଛି ଆଉ ଯେତେ କାଳ
ହେଲେ, ଜମାରୁ ଆଉ ଭଲ ଲାଗୁନାହିଁ
ଏ ଧୂଳିଘର ଖେଳ।

(୯)

କେତେ ଜନ୍ମର ଅପେକ୍ଷାରେ
ସେ ଆସିଲେ
ମୋ ସହ କଥା ହେଲେ,
କେତେ ବେଶରେ ମୋତେ
ଆନମନା ବି କଲେ
ଚିହ୍ନିପାରା ପାରିନି,
ସେ କିଂତୁ ଆସିଲେ ଆଉ ଗଲେ।

କେତେ ଆବେଗରେ ଆଦର ବି କଲେ
ନିମଂତ୍ରଣ କଲେ,
ଅଥଚ ମୁଁ ଧୂଳିଘର ଖେଳର ମାୟାରେ
ସେ ସବୁକୁ ବୁଝି ତ ପାରିନି,
ଏବେ ଖାଲି ଅଂଡାଳୁଛି ଯାହା
ସେ ଯେମିତି କହୁଥିଲେ
ଆଉ ଏକ ଜନ୍ମ ନେବା ପାଇଁ।

(୧୦)

ଯେତେସବୁ ଦ୍ୱେଷ, ପ୍ରତାରଣା
ଧନ-ଜନ, ଲୋଭ-ମୋହ ଆଦିଂକୁ ସାଉଁଟି
ଆନଂଦକୁ ଖୋଜିଲୋଡ଼ି ହେଉଥିଲି,
ସେତିକି କି ବଡ଼ ବଂଦୀଟିଏ ହୋଇ
ତୁମ ସାମ୍ନାରେ ଛିଡ଼ା ହେଉଥିଲି।

ଏ ସମସ୍ତଂକୁ ଛାଡ଼ି ତୁମମୟ ପରିଧିରେ
ସମାହିତ ହେବାକୁ ଗଲାବେଳେ,
ତୁମେ ଏବେ ଖୁବ୍ ଦୂରେ ବହୁଦୂରେ
ବଂଶୀ କି ଓଁକାର ଶୁଭୁନି ଜମାରୁ।

ପାପଂକୁ ଆଦରିଛି ଏବେ ବୋଲି ତ
ଏତେ ଜନ୍ମ ସରିସରି ଯାଏ
ନିର୍ଲିପ୍ତ ଆତ୍ମା ମୋର
ତୁମ ମୁହାଁ ହେବାବେଳେ
ଦେଖେ, ପୁଣି ସେ ବଂଦୀ,
ଆଉ ଏକ ପାପ ଓ ଦେହରେ।

ତୁମେ ତ କହିଥିଲ ଅର୍ଜ୍ଜୁନକୁ
ଏସବୁଂକୁ ଧୋଇ ତୁମକୁ ସ୍ମରିବାକୁ,
ମୁଁ ଯେବେ କରୁଛି ଏ ଚେଷ୍ଟା
କାହିଁକି ଯେ, ଦେଉନ ସେ ଦୀକ୍ଷା
ଅତି ଗୋପନରେ ଏସବୁ ଗୋପନୀୟତା
ଉଜେଇ ଦେବାକୁ ସଂସାର ସମୁଦ୍ରରେ।

ଆଉ ଜୁଡୁବୁଡୁ ହେବାର ନାହିଁ ସଂସାରୀ ମାୟାରେ
ଢେଉ ଗଣିବାର ନାହିଁ ବି ସମୁଦ୍ର ବେଳାରେ।

(୧୧)

ପ୍ରେମିକମାନେ ଚତୁଃପାର୍ଶ୍ୱରେ
ବିଚରଣ କରଂତି
ଛିଂଡା ଅଛିଂଡା ସୂତାରେ
କାମନାକୁ ବୁଣଂତି,
କାମନାମାନେ ଆଗେ ପଛେ
କିଛିକାଳ ଚାଲିବା ପରେ
ଛୁଇଁ ନ ପାରିବା ଶୋକରେ
ଫେରିଫେରି ଯାଆଂତି।

ତୁମମୁହାଁ ହୋଇଥିବା ହୃଦୟ ମୋର
କଅଁଳ ସୂତାରେ ତୁମସହ ବାଂଧି ସାରିଛି ବୋଲି ତ
ମୋତେ ସେମାନେ ଯେତେଯେତେ ଟାଣଂତି
ସେତେସେତେ ନିବିଡ଼ତାରେ ମୁଁ
ତୁମ ଆଡେ ଭାସି ଭାସି ଯାଏ।

## (୧୨)

ହେ' ପରମ ପ୍ରେମମୟ
କେତେ ଜନ୍ମ ପରେ
ମୁଁ ଆଜି ତୁମକୁ ଚିହ୍ନୁଛି
ଓ
ମତେ ଘେରିଥିବା ଏ ପୃଥିବୀକୁ।

ଦିଅ ମୋତେ ଅବିନାଶୀ ଶକ୍ତି
ଯେଉଁଥିରେ ପ୍ରୀତି ଭରି ପାରିବି
ତୁମ ସହ ସଂପର୍କଟେ ଯୋଡ଼ି ଦେଇ।

ଅପଶବ୍ଦର କରାଘାତେ
କେହି ନହେଉ ବ୍ୟଥିତ,
ସମୟ ଗଡ଼ି ନଯାଉ
ଦିଅ ମୋତେ ଶକ୍ତି
ମୁଁ ମୋ କର୍ମକୁ ନେଇ ଚାଲିରୁହେ
ଯେତେ ଯେତେ ଫଳଂକର ଶୋଷ
ନରହୁ ଦେହରେ।

ମାତୃହୀନ ଶିଶୁର ଦରୋଟି କାଂଦକୁ
କୋଳ ମୋର ସମାହିତ କରୁ।

ହେ' ପ୍ରେୟସ,
ତୁମରି ବିଭୂତିରେ
କେହି ବି ଅବଳା
ଏ ଦୁନିଆଁର କାମୁକୀ ନିଆଁରେ
ଭୂଲୁଣ୍ଠିତା ନ ହେଉ ଯେମିତି।

(୧୩)

ମୁଁ ନୀରସ ଓ ଶୁଷ୍କ ହୋଇଯିବାବେଳେ,
ମୋ ଭିତର ପ୍ରେମ ଆଉ ସ୍ନେହ, ଶ୍ରଦ୍ଧା
ଊଣା ହୋଇ ଆସୁଥିବାବେଳେ,
ତୁମେ ମୋ ହୃଦୟର ନିଭୃତ କୋଣରୁ
ସେତେବେଳେ ଡାକଟିଏ ଦେଇ ଦେଉଥିବ।

ମୁଁ ଚାହେଁ
ଅଜାଣତରେ ବି ମୋ ହାତ ସ୍ପର୍ଶ ନକରୁ
କିଛି କଳୁଷତା,
ମୋ ଓଠରୁ ଝରି ନଯାଉ କିଛି ଅପଶବ୍ଦ,
ତୁମ ଦେଇଥିବା ଆଖିରେ
ଭରି ନ ଯାଉ ପାପର ପରଳ
ନ ଶୁଣେ ମୁଁ ଯେମିତି କିଛି ଅପବାର୍ତ୍ତା।

ମୁଁ ଯଦି ସଂସାର ଜଂଜାଳରେ
ବାଂଧିହୋଇ ଯାଉଥାଏ,
ଧିରେ କି ଡାକ ଦେଇ ଦେଉଥିବ
ଜନ୍ମର ଉଦ୍ଦେଶ୍ୟ ମୋର
ମନେ ପକେଇ ଦେଉଥିବ।

## (୧୪)

ମୁଁ କେମିତି ଜାଣିବି ଯେ
ମୋ ପାପମାନେ ସରି ଗଲେ ନା
ମାଟି ଗଡ଼ାରେ ଉଚ୍ଛୁଳା ପାଣିପରି
ଉତୁରି ଗଲେ ?

ମୁଁ କେମିତି ଜାଣିବି ଯେ
ଚଉରାଅଶୀ ଲକ୍ଷ ଯୋନିର
କେଉଁ ବିଂନ୍ଦୁରେ ମୋର ଅବସ୍ଥାନ ?

ମୋ ଜନ୍ମ-ମୃତ୍ୟୁର ଘୂର୍ଣ୍ଣି ଓ ଆବର୍ତ୍ତ
ହିସାବ ରଖିବା ଲୋକ ତ 'ତୁମେ'
ତୁମ ସତ୍ତା ସହ ଏକାକାର ହେବି କେବେ
କେମିତି ଅବା ଜାଣିବି ?

ମୋ ମୂହୁର୍ତ୍ତମାନଂକର ଊର୍ଦ୍ଧ୍ୱରେ ତୁମେ
ତୁମ ଉର୍ଦ୍ଧ୍ୱେ ଆଉ କେହି ନାହିଁ,
ଏହି ମୁହୂର୍ତ୍ତକୁ ହିସାବ କରିବାକୁ ଯାଇ
ଏତେ କାଳ ବିତିଗଲା ପରେ
ଆଉ ଯେ କେତେକାଳ ତୁମ ଅପେକ୍ଷାରେ
ତାହା ମୋ ହିସାବ ଖାତାର ବାହାରେ।
ମୁଁ କେମିତି ଜାଣିବି ଯେ
ମୋ ପାପମାନେ ସରିଗଲେ ନା'
ମାଟି ଗଡ଼ାରେ ଉଚ୍ଛୁଳା ପାଣି ପରି
ଉତୁରି ଗଲେ... ?

(୧୫)

ହେ’ ମହାପ୍ରଳୟ
ଜନ୍ମ-ମୃତ୍ୟୁର ହିସାବ ନିକାଶ
ତୁମରି ହାତରେ
ପାପ-ପୁଣ୍ୟର ସୂଚୀପତ୍ର ବି ।

ମୁଁ ଜାଣେ,
ତୁମ ବିନା ନିର୍ଦ୍ଦେଶରେ
ଏଠି କିଛି ବି ହୁଏନା
ଏଣୁ ମୁଁ ଆଉ
ଅଂଡାଳିବି କାହିଁକି ?
ସବୁ କିଛି ତ ତୁମ ହିସାବ ଖାତାରେ ।

ହଁ, ଚିତ୍ତ ଯେବେ ତୁମ ପ୍ରସନ୍ନ ହୋଇବ
ଆଦର ସହକାରେ କୋଳେଇ ନେବ,
ଏଣୁ ଏମିତି କେତେ ଖେଳ ଖେଳିବ
ସେ ସବୁର ହିସାବ ବି ଲୋଡ଼ାନାହିଁ ।



# ଈଶ୍ୱରଙ୍କ ଚିତ୍ର

କେତେଥର ଭାବିଛି ଏଥରକ
ଈଶ୍ୱରଂକ ଚିତ୍ର ଆଂକିଦେବି।

ଆଖିରେ, ପାଟିରେ, ଲେଖନୀରେ
ଯେତେଥର ଈଶ୍ୱର ଗଢ଼ିଛି
ଅବୋଧ ଶିଶୁଟିଏ ଦୂଶିଛି।

ସେ ଈଶ୍ୱର ନୁହେଁ ବୋଲି
ହତାଦର କରିବା ପରେ
ମନଇଚ୍ଛା ନୂତନ ଈଶ୍ୱର ଗଢ଼ିଛି
ବାରଂବାର ଶିଶୁଟିଏ ହିଁ ଦୂଶେ
ସେ ମଣିଷର, ଛେଳିର, ବାଘର
କି ଡେଣା ଖୋଲି ଉଡୁଥିବା ପକ୍ଷୀର ?

କେତେ ଆକାର ଦେଇଛି
ଓଲଟପାଲଟ କରି ଦେଖିଛି
ଶବ୍‌ଦରେ ଜୀବନାଭୂତ କରିଛି।
ନା' ତାର ଆକାର ନାହିଁ।
ଆକୃତି ବୀହୀନ ଶିଶୁ କି ହୋଇପାରେ
ଈଶ୍ୱର ?

◆

## ମୁଁ ଈଶ୍ୱର କହୁଛି

ମୋ। ପୃଥିବୀ ଆଦୌ ଧ୍ୱଂସ ହେବାର ନାହିଁ
ଏଣୁ ଭୟ କରନା,
ଅତି ଆଦରେ ସମାହିତ ହୋଇଯାଅ
ପ୍ରେମ ଓ ପ୍ରତ୍ୟୟର ସହଯାତ୍ରୀ ହୁଅ
ମୋତେ ଈଶ୍ୱର ଭାବି ନୁହେଁ
ପ୍ରେମର ପ୍ରତୀକ ଜାଣି ସଂଚରିଯାଅ
ସାରା ପୃଥିବୀରେ।

ଦେଖିବ ତା'ପରେ ଚାରିଆଡେ ଶାଂତି,
ଏକତାର କଥା କହୁଥିବା ଏ ପୃଥିବୀରେ
ଆଉ କେହି ନଥିବେ
ବ୍ୟତିବ୍ୟସ୍ତ କରିବାକୁ ତୁମକୁ,
ଚିରିଗୁଣୀ, ପିଶାଚୁଣୀ,
କେହି ଭୟ ଦେଖାଇବେ ନାହିଁ
ତୁମେ ସଂପୂର୍ଣ୍ଣ ସମର୍ପିତ ହେବାପରେ।

ମୋ ପୃଥିବୀ ଆଦୌ ଧ୍ୱଂସ ହେବାର ନାହିଁ,
ଏଣୁ ଆସ, ଏଠାକୁ ଆସିଲାପରେ
ଆଉ, ବରାଦ କରିବାକୁ ପଡ଼ିବନି ଫୁଲ
ସୁଗଂଧ ତାର ସେମିତି ଆସିବ,
ବାଟରେ କଂଟାର  କଷଣ ରହିବନି
ମୁଲାୟମ ମନେ ହେବ ସାରା ସମୟ।

ଏଣୁ ଅଂତିମ ବିସ୍ଫୋରଣ ଆଗରୁ ଆସ
ମୋ ପୃଥିବୀ ଆଦୌ ଧ୍ୱଂସ ହେବାର ନାହିଁ।

◆

# ପ୍ରିୟତମ

ପ୍ରତି ସ୍ୱପ୍ନର ଦୁର୍ବଳ ମୁହୂର୍ତ୍ତରେ ଅନୁଭବ କରେ
ତୁମେ ଯେପରି କହୁଛ
ମୁଁ ତୁମର କେବଳ ତୁମର।
ମୋ ଭିତରେ ମୁଁ ଜଳି ଚାଲିଛି
କୁହ, ଏ ଜ୍ୱଳନ ଆଉ କେତେକାଳ ?

ମୁଁ ଜାଣେ, ତୁମର ଏ ଉନ୍ମାଦ ଆକୁଳତା
ମୋ ଭିନ୍ନ ଆଉ କେହି ଶୁଣିପାରେନା,
ଅନୁଭବି ପାରେନା
ପ୍ରେମର ଏଇ ବେପଥୁ କଂପନ।

ତେଣୁ ତୁମ ହୃଦୟର ପ୍ରେମ ସ୍ରୋତରେ
ଝରଣାଟେ କର
ମୋତେ ଚଂଚଳ କରୁଥିବା ସେହି ନାଦରେ
ଧ୍ୱନୀଟିଏ କର।

ନତୁବା ବଂଶୀର
କେଉଁ ଏକ ଶୂନ୍ୟରେ ସ୍ଥାନ ଦିଅ
ସବୁଦିନ ବାଜୁଥିବି ବିଭୋର ବେହାଗ,
ନିତିପ୍ରତି ମଧୁର ଆବେଗରେ
ବିମୋହିତ ହୋଇ
ଜଳୁଥିବା ଏ ଦେହରେ
ଲେଖିଦେଇ ତୁମନାମ।



# କିଛି ବଦଳିବାର ନାହିଁ

ଶ୍ରୀକ୍ଷେତ୍ରକୁ ଯିବି କହି
ଯେତେ ସଜବାଜ ରହିଲା ସେମିତି
ଅସୁମାରି ଯୁଗ ବିତିବା ପରେ
କେଉଁ ଏକ ଅପାଂକ୍ତେୟ ଇଲାକାରୁ
ମାଡ଼ିଆସିଲା ଘନଘୋର ଅଂଧାର।

ହେଲେ ବି ସେହି ଗୋଟାଏ ଆଶା
ନୀଳାଚଳ ଯିବି, ଚକାଡୋଳାକୁ ଭେଟିବି
ପଚାରିବି-
ରାତି ସରୁନି କାହିଁକି ?

ତେବେ କି ଆଉ ପ୍ରଶ୍ନ ଅଛି ପଚାରିବାକୁ ?

ଏଠି ଏବେ ତ ପଡ଼ିଥିଲା ପଥର
ତା'ତଳେ ଦଳି ହେଇଯାଉଥିବା
ବିଷହୀନ ସାପ
ଏଠି ଆକାଶ ମୁହାଁ କାଂକଡ ଲତାଥିଲା
ଏମାନେ ସମସ୍ତେ ଗଲେ କୁଆଡେ ?

ଅଂଧାର ଅନତିକ୍ରମ୍ୟ ହେଲେ ବି
ଏହି ଅଂଧାର ଶାଂତ ଓ ଶୀତଳ ଲାଗୁଛି ।
ପରମୁହୂର୍ତ୍ତରେ
ଆଲୋକର ସମ୍ମୁଖୀନ ହୋଇ ଜାଣିଲି
ସାକ୍ଷାତ ଚକାଡୋଳାଂକୁ ପାଇଲି
ଏଡ଼େ ଓଲିଟେ ପ୍ରଶ୍ନ ପଚାରିପାରିନି ।

ସବୁ ଅଂଧାର ଚାଲିଗଲା ପରେ; ଦେଖୁଛି
ପଥର, ବିଷହୀନସାପ ଓ କାଂକଡ଼ଲତା
ପଡ଼ି ରହିଛଂତି
ଯେମିତିକୁ ସେମିତି ।



# ବଙ୍ଗୋପସାଗର

ପ୍ରତିଟି ସ୍ୱପ୍ନଦେଖାର ଆଚ୍ଛନ୍ନ ଲଗ୍ନରେ
ଅନୁଭବ କରେ
ତୁମେ ଯେପରି କହୁଛ
ମୁଁ ତୁମର, କେବଳ ତୁମର ।

ଅଥଚ ମୁଁ ଜଳିଚାଲିଛି
ଏ ଜ୍ୱଳନ ଆଉ କେତେ କାଳ ?
ଏ ଉନ୍ମାଦ ଆକୁଳତା
କେହି କ'ଣ ଶୁଣିପାରେ ?
ଅନୁଭବ କରି ପାରେ
ପ୍ରେମର ଏହି ବେପଥୁ କଂପନ ?

ତୁମ ହୃଦୟର ଅନଂତ ପ୍ରବାହରେ
ଛୋଟ ଏକ ଝରଣାର ଆଗ୍ରହ ମୋ ଭିତରେ
ତୁମର ସେହି ପ୍ରେମମୟ ନାଦ
ଯାହା କରେ ମୋତେ ବିମୋହିତ
ସେଠି ସୂକ୍ଷ୍ମ ଧ୍ୱନୀଟିଏ କରିଥାଂତ
ତେବେ ଏତେ ଆର୍ତ୍ତୀ ଏମିତି
ଅକାଳରେ ଝଡ଼ିଯାଇ ନଥାଂତା ।

ସହସ୍ର ଯୁଗରୁ ଦେଖୁଛି
ତୁମ ତୁଠରେ ଭକ୍ତଂକର ଭିଡ଼,
ଏଣୁ ମୋ ପ୍ରାଣ ବି ଉଚ୍ଛୁଳି ଉଠିଲା
ଗୋଟାଏ ଦର୍ଶନ ପାଇଁ।
ଏବେ ଏତେ ପାପଂକୁ ନାଇ
କେଉଁ ତୁଠକୁ ଯିବି, ଧୋଇବି ?

ନା' ମୋର ଇଚ୍ଛା ନାଇ
ଏମିତି ବିକ୍ଷୁବ୍ଧ ଓ ଅଶାଂତ ସାଗର ହେବା,
ବରଂ ମତେ ଶାଂତ ଓ
ଶୀତଳ ଝରଣାଟେ କର
ଚିରକାଳ ଚୁମୁଥିବି
ଯେମିତି ଚରଣ ତୁମର।

◆

(ମହାବାତ୍ୟାରେ ବଂଗୋପସାଗରର ବ୍ୟଥା)

# ଆଗକୁ ଈଶ୍ୱର ପଛେ ମେଷଛୁଆ

**ହେ'** ଈଶ୍ୱର
ତୁମକୁ ଚିହ୍ନିବା, ଜାଣିବା, ବୁଝିବା,
ତୁମ ନିକଟତର ହେବା
ପୁଣି ବାଟେଘାଟେ ଅଟକିବା ।
ମେଷ ଛୁଆକୁ କୋଳେଇବା
ଅସ୍ଥିର କରେ
କୋଳକୁ ଆବୋରି ଧରେ
ମନକୁ ଛୁଏଁ
ରହସ୍ୟମୟ ଚୁଂବକୀୟ ଶକ୍ତି
ଅଦୃଶ୍ୟରେ ହଜେ
ତଥାପି ବେଳେବେଳେ କେବେ ବା କେମିତି
ମନେପଡ଼ିଯାଏ ପଛେ ପଛେ ଚାଲୁଥିବା
ସେହି ମେଷ ଛୁଆ ।

◆

# ଠାକୁର ଘର

ଠାକୁର ଘରେ ଠାକୁର ଥିବେ ଭାବି
ପଶି ଯାଉ ଯାଉ ବହଳ ଅଂଧାର,
ଭାବିଥିଲି ଠାକୁର ଘର ଉଦ୍‌ଭାସିତ ଦ୍ୟୁତିରେ
ପୋଛି ହୋଇଯିବ ଜନ୍ମ ଜନ୍ମର ପାପ,
ହେଲେ ଏ କେମିତି ଅଂଧାର ?

ଯେଉଁଠି ପାପିଂକର ଠେଲାପେଲା
ଦେଣନେଣ ଭାବ
ସେଠି କି ଆଉ ପୁଣ୍ୟ କାହିଁକି ଆସିବ ?

ନିଜ ଭିତରେ ସ୍ୱପ୍ନିଳ ହେଇ ପଡୁଥିବା
ନାରୀ ଆଉ ପୁରୁଷମାନେ
ମିଶି ଯିବା, ଏକାକାର ହେବା
ଧୂସର ଆବର୍ତ୍ତରେ
ଦହଗଂଜ ଦେହକୁ ନେଇ
ସଂସାରରେ ଆତ୍ମଲିପି ଖୋଜିବା
ନିହାତି ଗୋଟିଏ ବୋକାପଣ
ନୁହେଁ ତ ଆଉ କଣ ?

ଠାକୁର ଘରେ ଠାକୁର ଥିବେ ଭାବି
ପଶି ଯାଉ ଯାଉ ବହଳ ଅଂଧାର,
ନିସ୍ତରଂଗ ବିଭୀଷିକା
ନିଃଶବ୍ଦ ଆର୍ତ୍ତନାଦ ।



# ମାତୃଗଂଠି

ନେ ଯାହା ନେବୁ ନେ
ପେଁ କାଳି ନେ, ଆଲିଂଗନ ନେ
ଯାହାନେବୁ ନେ ମନାନାଇ
ତୋର ଯେତେ ପାରିଲାପଣରେ ମୋତେ
ବିଭ୍ରାଂତ କରିବୁ କର।

ମୋର ପ୍ରତି ପ୍ରଶ୍ନର ଉତ୍ତରରେ
ଲେଉଟାଣି ଶବ୍ଦ ହେଉ
କି ପୂର୍ଣ୍ଣଚ୍ଛେଦ ହେଉ
ଯାହାଦେବୁ ଦେ।

ମନେଇ ନେ
କେତେପାରିବୁ କେତେ ତାରିବୁ
ହେଲେ, ମୋର ମାତୃଗଂଠିକୁ
ଦେ ଥରେ ଫିଟେଇ
ତୋ ପାଖରେ ନେହୁରା ହେଉଛି
ବଦଳରେ
ଯାହାନେବୁ ନେ।

ଏଇ ଅନ୍ତଃକରଣକୁ
ଯମୁନାରେ ହେଉ କି ଗଂଗାରେ ହେଉ
ଦେ, ଧୋଇ ଦେ
ମଥୁରାରେ ହେଉ କି ନଂଦରେ ହେଉ
ମୋ ମାତୃଗଂଠି ଥରେ ଫିଟେଇ ଦେ
ବଦଳରେ ! ନେ, ଯାହାନେବୁ ନେ।



# ବାସ୍ତବିକ

ଯେଉଁଠି ଫିଂଗିବ ଜୀବନକୁ
ଫିଂଗିଦିଅ
ହେଲେ ସେଠି ରୁହ
ନିମ୍ନ ମୁହାଁ ଚେର ହୋଇ,
ମାଟିରୁ ଆଶ୍ରୟ ପାଇବ
ଓଦା ଓଦା ମନ ନେଇ
ଶାଂତିରେ ଜୀଇଁବ।

ଅଧା ଜଳା ଜୀବନକୁ
ଜଳିବାକୁ ଦିଅନା,
ଜଳିଲେ ହୁଏତ
ଭଷ୍ମୀଭୂତ ହେଇଯିବ
ଦରଗଢ଼ା ଜୀବନର ପରିଭାଷା ଏବଂ
ଅକାଳରେ ନିଜେଇ ଝରିପଡ଼ିବ।

ତୁମ ପଂଜୁରିରୁ ଉଡ଼ିଗଲେ
ଯେତେସବୁ ହରରଂଗୀ ପକ୍ଷୀ
ସେମାନଂକୁ ଝୁରିବା କ'ଣ ନିହାତି ଦରକାର?

ନିଜ ତିଆରି ଲୁହ ଓ ହସରେ
ଜୀବନ ଜୀଇଁବାକୁ ହୁଏ,
ବେଳେବେଳେ ନିଷ୍ଠୁର ମନକୁ
କଅଁଳ ଆଶକ୍ତିରେ ଭରିବାକୁ ହୁଏ,
ଯୋଡ଼ ହସ୍ତରେ ଈଶ୍ୱରଂକୁ
ମୁକ୍ତିର ଭିକ୍ଷା କରିବାକୁ ହୁଏ।



# ଶନିବାର ହାଟ

ବଂଦ ଝରକା
ଖୋଲିବା ଯାଏଁ ଅପେକ୍ଷା କରିବି
ଏ କିପରି ଘର ଶୂନଶାନ୍
ପବିତ୍ର ଓ ଭୟାନକ।

ଏଠାକୁ ବସଂତରେ ଏକ ପକ୍ଷୀ ଆସେ
ପୁରୁଣା ଫ୍ରେମ୍‌ରେ ଲାଗିଥିବା
ଦର୍ପଣ ଉପରେ, ମାରିବାକୁ ଥଂଟ
ସେହି ଦିନର ବିକଳ ପକ୍ଷୀ
ଯେବେ ଆସେ
ଝରକା ଖୋଲିଦିଏ
ଉଦାସ ଦିନର ଅବସାନ ଘଟେ
ସେହି ମୁହୂର୍ତ୍ତରେ।

ସେହି ଐଶ୍ୱର୍ଯ୍ୟଶାଳୀ ଘରର
ସବୁ ଦୃଶ୍ୟକୁ ଦେଖେଁ
ଉପର ପର୍ଯ୍ୟଂତ ଆଚ୍ଛାଦିତ ଜାଲି
ଜୀର୍ଣ୍ଣ ଏବଂ ରଂଗ ବିହୀନ ଛାତ
ବାହାରକୁ ପତ୍ର ରହିତ ନିର୍ବାକ ଗଛ।

ଦିନ ବଦଳି ଯାଇଛି ବୋଧେ ସମଗ୍ର ଦୁନିଆଁର
ଜଲଦି ଜଲଦି ଚଢ଼ିଲି ଛାତ ଉପରକୁ
ସେଇଠୁ ଦେଖେଁ
ଶନିବାର ଦିନ ହାଟରୁ ଫେରୁଥିବା ଲୋକଂକୁ
ସ୍ତ୍ରୀମାନେ ଗଂଠୁଲି କରି ମୁଂଡରେ ବୋହିନେବା
ପୁରୁଷମାନେ କାଂଧରେ ଭାର ବୋହିଯିବା
କି ହାତରେ ଝୁଲା ଭିତରେ
ବିଭିନ୍ନ ବିଜ ଭରିନେବା।

ଏ କେଉଁ ସ୍ତ୍ରୀଲୋକ, କେଉଁ ପୁରୁଷମାନେ
ପ୍ରାୟତଃ ଧୀରେ ଚାଲୁଥିବା
କିଛି ଅଧିକ ଧିର ପୂର୍ବ ତୁଳନାରେ
ଏହି ରାସ୍ତାରେ ସବୁ ଶନିବାର ଦିନ
ଚୁପ୍‌ଚାପ ତୁମକୁ ଦେଖିବାକୁ
ଝରକା ଖୋଲେ; ଡରିଡରି
କାଳେ ସାହି ପଡିଶା ଦେଖି ଦେବେ
ହେଲେ କାହିଁକି ଯେ ଏତେ ଭୟ
ଯେଉଁଠି କେବଳ ନିସ୍ତବ୍‌ଧତା
ଆଉ ବିଚରଣ କରଂତି କେବଳ
ସ୍ତ୍ରୀ, ପୁରୁଷମାନେ।

ନିଜର ଢିଲା, ପତଳା ବାହୁରେ ଧରିଥିବା
ବଡ଼ ବଡ଼ ପାଣିଗରା
ବେଣୀରେ ତାଜା ଫୁଲର ମାଳା।
ପତଳା ବେକରେ ରେଶମର ରୁମାଲ୍ ବାଂଧି
ମଦପିଇ କୌଣସି ପୁରୁଣା ସିନେମାର
ମଧୁର ଗୀତ ଗାଇବା ଦେଖେ।
ଝରକା ବଂଦ କରୁ କରୁ
ତୁମେ ଚାଲିଯାଅ
ହଜାର ମାଇଲର ଦୂରତା
ଆମ ଭିତରେ ତା'ପରେ ଶୂନ୍ୟତା,
ବରଫରେ ଜୁଡୁବୁଡୁ ପକ୍ଷୀପରି
ଧଳା ଏବଂ କଂପନମୟ
ତୁରଂତ ଏହି ଅଂଧାର
ପଲସ୍ତରା ଘେରାଘରେ
ପୁରୁଣା ଲଂଠନ ଜଳାଏ
ସାତ ରଂଗର।

ଦେଖେ-
ଆଲୁଅ ଫେରିଆସିଛି
ଗାଁର ସେହି ସମୟ
ସ୍ତ୍ରୀ, ପୁରୁଷ ଯେଉଁମାନେ
ଶନିବାର ଦିନ ହାଟ କରି ଫେରଂତି।

ବଳକା ଆଲୁଅରେ ଦେଖେ
ଗାଁ ଆଡ଼କୁ
କିଛି ପୂର୍ବଠାରୁ ଅଧିକ ଥକ୍କା ଏବଂ ଧୀର ଗତି
କୌଣସି ଗୀତ, ଖଣ୍ଡ-ଖଣ୍ଡ, ପୁଣି ଯୋଡ଼ିଯିବା
ଏବେ ଆଉ ସେହି ଦିନ ନାହିଁ
ଝରକା ମଧ୍ୟ ଖୋଲାଅଛି
କିଂତୁ ଏହି ଦ୍ୱାରବଂଧ ଉପରେ
ଶନିବାରର ହାଟରୁ ଫେରିଥିବା ସ୍ତ୍ରୀ, ପୁରୁଷ
ଏ ପର୍ଯ୍ୟଂତ କାହିଁକି ଛିଡ଼ା ହୋଇଛଂତି ?

◆

# ଆୟୁଷ

ଆୟୁଷରୁ
ଝରି ଯାଉଥିବା ଯୌବନ
ଖସି ଧସି ମିଶି ଯାଉଛି ବୋଲି
ଯେତେ ଦାବି କଲେ ବି
ସଂଚିତ ଥାଏ ସେ
ବାକି ପରମାୟୁ ପାଇଁ।

ନାଚାର ହୃଦତଳୁ ଉଠେ ସେ ନାମ,
ଯାହାକୁ ଆଶ୍ରୟ ଦେବା ଅନିବାର୍ଯ୍ୟ।

ଆଶ୍ୱାସନାର ଦହଗଂଜରେ
ଆକ୍ତାମାକ୍ତା ବିଚରା ଜୀବନ
ଶାଂତି ଟିକକ ପାଇଁ ଗଲା ଯେ ଗଲା,
ତା'ବି ପାଇଲାନି।

ଶବ୍ଦମୟ ଇଲାକାରେ
ଭାବ ଖୋଜୁଖୋଜୁ
ନିଜକୁ ହଜେଇ ଦେବାର ବେଳ
କେମିତି ଯେ ଆସିଗଲା,
ତମାମ୍ ଆୟୁଷରୁ ମୁହୂର୍ତ୍ତଟେ ହିଁ
ସାମାନ୍ୟ ଦୋହଲି ଗଲା।



# ତୁମେ ଆସିବ

ଋତୁଗୋ ତୁମେ ଆସ, ଆସ ତୁମେ
ତୁମର ନୀଳାଭ ପରିଧିରେ,
ବାଟେଘାଟେ ଅଟକିବ ନାହିଁ
ସେମାନେ ଅଟକି ଯାଆଂତି
ଅଜଣା ସ୍ଥିତି ଓ ଠିକଣାରେ
ନିଜକୁ ଖୋଜିବାର ଦ୍ୱଂଦରେ।

ହେଲେ କୁହ ତ,
ବେଳେବେଳେ କାହିଁକି
ଏତେ ସୀମିତ ହୁଅ,
କାହିଁକି ତୁମକୁ ଅଂଡାଳେ
ସୀମାବଦ୍ଧ ପରିଧି ଭିତରେ।
ତୁମେ ଯେ କେବଳ ଏକା ମୋର ନୁହଁ
ତେଣୁ କେମିତିବା କହିପାରିବି
ମୋ ପରିଧି ଭିତରେ ରହିବାକୁ ଚିରକାଳ
ଆଉ ଆଚ୍ଛନ୍ନ କରିବାକୁ
ବେଳ ଅବେଳରେ।

ମୌସୁମୀ ଆଉ ରୋମାଂଚ ଆଣୁନି
ସମୟ ରୋଗଗ୍ରସ୍ତ ହେବା ପରେ
ତୁମଠୁଁ ଦୂରେଇବା ପରେ
ଅଶାଂତ ଆକାଶ
ଖୁବ୍‌ବେଶୀ ଆନମନା କରେ
ସତ୍ତା ଓ ଅସ୍ତିତ୍ୱକୁ ସୀମିତ କରିଦିଏ ।

ଚିରତୃଷ୍ଣାର ଓଠରେ,
ଜଳୁଥିବା ଦେହରେ
ପ୍ରୀତିର ପରାଗ ପରଶରେ
ଋତୁଗୋ ତୁମେ ଆସ, ଆସ ତୁମେ
ଅଶାଂତ ଆକାଶକୁ କରିବାକୁ ସମାହିତ
ଖୋଲା ଆକାଶ ତଳେ ଡେଣା ମେଲି
ଉଡିବାକୁ ତୁମ ସହ ।

ତେଣୁଗୋ ପ୍ରିୟତମ ଋତୁ
ତୁମେ ଆସ,
ହଁ ନିଶ୍ଚୟ ଆସିବ ।



# ପାପ

ଯେତେ ସାଉଁଟିବାର ଅଛି
ସାଉଁଟି ନେ,
ବେଳ ଆସିଛି ଦିନ ଜଗିଛି
ନିକ୍ଷେପିତର ଭୟ ଅବା କାହିଁ ?
ଯେତେ ସାଉଁଟିବାର ଅଛି,
ସାଉଁଟି ନେ ।

ସଭିଁଙ୍କ ପାପ ଧୋଉ ଧୋଉ
ନିସ୍ତରଂଗ ପୃଥିବୀରେ
ଅବେଳରେ
ଝରି ନ ଯାଉ ଯେମିତି
ତୋ ବାକିଥିବା ପରମାୟୁ ।

ଆର ଜନମକୁ ଭୟ ନଥାଉ
ନର୍କର, ପାପର କି
ହିସାବ ନଥାଉ ପୁଣ୍ୟର ।

ଯୋଗୀ ହେଉ କି ଭୋଗୀ
ଦେ' ଗଢ଼ି ପୁଣ୍ୟର ମହଲ
ଯେଉଁଠି ନଥିବ ପାପର ହିସାବ ଅବା
ପୁଣ୍ୟକୁ ସାଉଁଟିବାର ଆକାଂକ୍ଷା ।

◆

# କଥା

ଗଜୁରୁଥିବା ଗଜା, କଅଁଳୁଥିବା ପତ୍ର
ଫୁଟୁଥିବା ଫୁଲର ନିବିଡ଼ତା ପରେ
ଦୂରେଇ ଯିବା
ଖୁବ୍ ଘନିଷ୍ଠତା ପରେ
ଦୂରତ୍ୱ ମାପିବା କଷ୍ଟ ଦିଏ
କଥା ସବୁ ଦଫନ ହୁଏ ।

ସମୟର ନିଷ୍ଠୁରତା
ପ୍ରତିଘାତ କରେ
ଚୁମ୍ବନର ବୀଜ ରୋପେ
ନୀଳ ସମୁଦ୍ରରେ,
ନାଭିର ଘୂର୍ଣ୍ଣି ଦରିଆରେ ।

ସାବ୍ୟସ୍ତ ଅଧିକାର ଭଲ ଲାଗେ ବୋଲି ତ,
ଆଲିଂଗନର ସିତ୍କାର ଖେଳେ
ମିଳନ ବେଳରେ ଆଉ
ଶେଷ ହୁଏ ଯେତେ ବାକିଥିବା କଥା।

ଘଡ଼ିକ ପାଇଁ ଯଦି ପୃଥିବୀର
ଉଷ୍ଣତା ଅଟକି ଯାଆଂତା
ଜୀବନର ଅନେକ ପୃଷ୍ଠା
ଖୋଲିବା ହୁଅଂତା।

ଶୁଣ, କିଛି ଭାବିବନି ଯଦି
କହିବି ସାଇତା ଥିବା ସେଦିନର କଥା।



## ଫେରିବ ?

ଫେରିଲନି,
ତୁମ ଫେରିବା ବାଟକୁ ଚାହିଁ
ଲୁହର ପାର୍ବଣ ମୋର
କେଉଁ ମୁହୂର୍ତ୍ତରେ ଫେରି ଆସିବ କି ?

ଯେତେ ମାଟିକୁ ଛାଡ଼ି ଆକାଶେ ଉଡ଼ିଲେ
ମୂଳର ମଂଜକୁ କ'ଣ ଭୁଲିଯାଇ ହୁଏ ?

ଥରୁଟିଏ ପାଇଁ ଫେରିଆସ
ଜୀବନରମାନେ ବୁଝେଇ ଦିଅ
ମନ୍ୱଂତରୀ ବେଳାକୁ
ସେହି ଗୋଟିଏ ପ୍ରଶ୍ନ।

ସ୍ୱପ୍ନ ଥରେ ଭାଂଗିଲେ ଭାରି କଷ୍ଟ ହୁଏ,
ତେଣୁ ଆଉ ଥରେ ଆସ
ଭଂଗା ସ୍ୱପ୍ନ ଯୋଡ଼ିଯାଡ଼ି
ନୂଆ ସ୍ୱପ୍ନ ଗଢ଼ିବା
ସେ ଯେଉଁ ଗଲ ଯେ ଆଉ ଫେରିଲନି
ଫେରିଲେ କିଂତୁ ଏଥର ଜୀବନ ହିଁ ଖୋଜିବା।

◆

# ଅପରିବର୍ତ୍ତିତ

ସହର କେବେ ମରେନା
କେବଳ ମରେ ମୁଁ
ମରି ପୁଣି ଜିବିତ ହୁଏଁ
ବାରଂବାର ମରେ ଆଉ
ଜନ୍ମନିଏଁ
ସହର ସେହିପରି
ସେଇଠି
ଜହ୍ନର ସେହି ଦେହ
ଯେଉଁଠି ଛାଡ଼ି ମୁଁ ମରିଥିଲି ।

ପୁନର୍ଜ୍ଜିବନ ପରେ ପାଇଲି-
ସହରର ଅପରିବର୍ତ୍ତିତତା
ଫିକା ହୁଏ ମନ
ସବୁ ଜନ୍ମରେ ଜହ୍ନର ସେହି ଗୋଟିଏ ଦେହ
ଅଧିରତା ଆବୁରି ବସେ ।

ମୋର ମୃତ୍ୟୁରେ
ସହରରେ କୌଣସି ପରିବର୍ତ୍ତନ ଆସିନାହିଁ
ନା' ଜହ୍ନ କଡ଼ ଲେଉଟିଛି
ମୁଁ ବି ରହିଛି ସବୁ ଜନ୍ମରେ
ଠିକ୍ ଯେପରିକୁ ସେପରି ।

◆

# ଆଶ୍ରୟ

ମୁଁ ନଥିବି, ତୁମେ ନଥିବ
ରଂଗ ଆମ ଖେଳୁଥିବ ନିଜ ଦୁନିଆଁରେ
ସାହାନାଇ ବଜାଇ, ପେଁକାଳି ବଜାଇ,
ଘୋଡ଼ାନାଚ ଦେଖାଇ।

ଦେଖ ଋତୁମାନେ ବଦଳୁଛଂତି
ଜୀବନକୁ ପାଣି ଛଡ଼ାଇ
କୋକୁଆ ଭୟରେ ନିଘା ରଖିଛଂତି।

ଜୀବନ ବଂଚିବାକୁ ଭିନ୍ନ ବାଟ
ଆଦରି ନେଉଛଂତି
ଆଶ୍ରୟର ସଂଭାବନା ତୋଳୁଛଂତି
ଜୀବନ ନାଟିକା ଶେଷ ହେବା ଯାଏଁ
ଆଶ୍ରୟ ଖୋଜିବା ହୁଏ
ସେ ଆଶ୍ରୟ ହେଇପାରେ ନୂଆଖାଲିର
ହେଇପାରେ ଆଇନ୍‌ର
ହେଇପାରେ ବୃଦ୍ଧାଶ୍ରମର
ହେଇପାରେ ଯଂତ୍ରଣାରୁ ମୁକ୍ତି ପାଇବାର।



# ମୁଁ ଥିବା ଯାଏଁ

ତୁମକୁ ଭଲପାଏ
ଏକଥା କହିବା କ'ଣ ଜରୁରୀ ?

ନ କହି ବି ଭଲ ପାଇ ହୁଏ
ଜୀବନ ଦେଇହୁଏ
ଟାକୁଆ ଭିତରେ ଆମ୍ବ ଗଛର ଜୀବନ ଭଳି
ଦେଖୁନ, ତମକୁ ଭଲ ପାଇଛି ବୋଲି ତ
ଦେହର ଏ ଅଭ୍ୟଂତର ବଦଳିଛି
ଝରିଛି ପ୍ରେମର ଆଗ୍ନେୟ
ଲାଭାର ଉଦ୍‌ଗିରଣ ।

ଏଦେହ ଥିବାଯାଏଁ ଏସବୁ
ମାଟିରେ ମିଶିବା ପରେ
ଯଦି ମୁଁ ଆଉ ମୁଁ ହେଇଥିବି
ତେବେ ପୁଣି ଦେଖାହେବ
ଦେହରେ ଦେହ ମିଶିବାକୁ
ନଚେତ ଏମିତି ଭଲ ପାଇବା ଥିବ
ଯେଯାଏଁ ମୁଁ 'ମୁଁ' ହୋଇଥିବି ।

◆

# ଭଂଗାଗୀତ

ଭଂଗାଗୀତ ଗାଉ ଗାଉ
ତୁମକୁ ଭେଟିଲି ବୋଲି
ସଂପର୍କ ଅଧା ଗଢ଼ା,
ଅଧା ଭଂଗା ହୋଇ
ଅଧାଯୋଡା, ଅଧା ଛିଂଡା ହୋଇ
ଗଢ଼ିହେଲା ବୋଧେ
ଅଧାଗଢ଼ା ଜୀବନରେ ଗାଇବାକୁ ହୁଏ
ଅନେକ ଭଂଗାଗୀତ।

ଗାଉଥିବା ଭଂଗାଗୀତରୁ
କେବେ କ'ଣ ଗଢ଼ିହୁଏ
ଜୀବନର ମାନଚିତ୍ର ?
ଏଣୁ କଳ୍ପନାରେ ସାଇତିବାକୁ ହୁଏ
ଅନେକ କାହାଣୀ
ଯେଉଁ କାହାଣୀର ଶେଷ ହୁଏ
ଜୀବନ ସରିବା ପରେ।

ତେବେ କି କାହାଣୀ ଶେଷ ହୁଏ
ପୁଣି ଆରଂଭ ହୁଏ ନୂଆ କରି
ନୂଆ ଭଂଗାଗୀତ ନେଇ।
ଏ ଚକ୍ରରେ ଘୂରୁଥିବା ଜୀବନ
କେବେ କି ଜାଣିପାରେ
ଜୀବନର ରହସ୍ୟ,
ଜୀବନର ପରିଭାଷା,
ଓ ଜୀବନ ନାଟିକା ?

◆

# ନିରୋଳାବେଳ

ନିରୋଳା ବେଳରେ
ମନେ ପଡ଼େ,
ଗାଁ ଦାଣ୍ଡ, ସ୍କୁଲ ଘର,
ପିଜୁଳି ଗଛର ସେହି ସରୁ ଡାଳ
ପ୍ରତିଟି ତଂତ୍ରୀରୁ
ବାହାରୁଥିବା ସେହି ଅଂତରଂଗ ବାସ୍ନା

ତା'ପରେ ନୀରବତା
ଏସବୁ ସ୍ମୃତି ପାଲଟିବା ପରେ
ଆଉ କ'ଣ ଥାଏ ପୃଥିବୀରେ
ସଂପର୍କ ଆଉ ବଂଧନ,
ଜତୁଗୃହରେ ଜଳିବାଠୁଁ ବରଂ ଭଲ
ଏକା ବଂଚିଯିବା ।

କୁହ, ଆଉ କାହିଁକିବା
ଅତୀତକୁ ଝୁରି ହେଇ
ତୀବ୍ରତର ଦହନରେ ଆଉଟିବ ଜୀବନ।

ନିରୋଳାରେ ନିଜ ଲୁହ ନିଜେ ପିଇ
ସ୍ମୃତିକୁ ସାଉଁଟି ଅବଶିଷ୍ଟ ଜୀବନ
ବଂଚିବାକୁ ହୁଏ
ଯଦିଓ ନିରୋଳା ବେଳ ଅନେକ କିଛି
ମନେ ପକାଇଦିଏ।

◆

# ପ୍ରଣୟ ପ୍ରବେଶ

ଦେହରେ ପ୍ରଣୟ ପ୍ରବେଶିବା ପରେ
ନୃତ୍ୟାଂଗନା ପରି
ଚହଲାଇ ଦିଏ ଶିଥିଳ ଜୀବନକୁ
ପ୍ରତି ମୁହୂର୍ତ୍ତ ତା'ପରେ
ମନେହୁଏ ସଂଗୀତର ସମ୍ମୋହନ।

ଖଂଡିଆଭୂତ ପରି
ଅକସ୍ମାତ ଚଳ ଚଂଚଳ ହେଇଉଠେ
ସବୁଯାକ ସ୍ନାୟୁ ଓ ଆବେଗ,
ଉନ୍ମୁକ୍ତ ଆକାଶ
ପାଗଳ ପବନ
ମନତଳୁ ଜୀବନର ସଂଗୀତ ଝରେ।

ଜୀବନ ଆଉ ଅତିଷ୍ଠ ଲାଗେନା
ପ୍ରଣୟ ପ୍ରବେଶିଲା ପରେ,
ନିତି ପ୍ରତି ନୂଆ ସୁର ତୋଳେ
ପଥର ବୀଣାରେ ଝଂକୃତ ହୁଏ
ଜୀବନର ଜୀବଂତ ଅନୁପ୍ରାସ।



# ସମର୍ପିତ

ତୁମେ ଦେଇଥିବା ସବୁ ପ୍ରତିଶ୍ରୁତି
ମନେ ଅଛି,
ତାରାଂକ ବଗିଚାରୁ ଆଣିବା ଫୁଲ
ଜହ୍ନରାତିରେ ମଂଡିବା ଗଭା,
ଝାଉଁଳି ଯିବାପରେ
ସେ ଫୁଲ ତୁମ ପ୍ରତିଶ୍ରୁତିର
ବିଭୋରତାରେ ମହକିବା।

ଜାଣିଛ ନା,
ଏଯାଏ ମୁଁ ଥକି ଯାଇ ନାହିଁ,
ତୁଳସୀ ଚଉଁରା ମୂଳେ
ଥରି ଥରି ଜଳୁଥିବା ଦ୍ୱୀପ
ଅପେକ୍ଷାର ପ୍ରତୀକ
ଆଉ ପ୍ରତୀକ୍ଷିତ ଆତ୍ମା ମୋର
ଚିରକାଳ ତୁମର ହିଁ ସଂତକ।

ତେଣୁ ତ ପ୍ରତି ରାତିର ଅଂଧାର ବକ୍ଷରେ
ତୁମେ ଜଳୁଥାଅ ନକ୍ଷତ୍ର ହୋଇ
ଖାଲି ଗୋଟେ ଯା'ସଂଶୟ,
ଆଖି ସାମ୍ନାରେ ତୁମେ ଏମିତି
ପ୍ରତିଶ୍ରୁତି ହେଇ ରହିଥିବ
ନା' ଆସିବ ସାକାର ପରିପୂର୍ଣ୍ଣତା ନେଇ ?



## ସଂଜ ସଂଗୀତ

ଏମିତି ସବୁ ସଂଜରେ
ଖୋଜୁଥାଏ ତୁମକୁ
ଖୋଜୁଥାଏ ଗୋଧୂଳି ତୁଠରେ,
ଗାଈଗୋଠ ଧରି ଫେରୁଥିବା
ଗାଈଆଳଂକ ଗହଣରେ,
ଅସ୍ତମିତ ସୂର୍ଯ୍ୟର ନାରଂଗୀ ପଣରେ,
ସଂଜ ଦୀପ ଚଉଁରାମୂଳେ,
ବଂଶୀର ସ୍ୱରରେ
ଏବଂ ଏସବୁ ଭିତରେ ତମକୁ ପାଇଥାଏ।

ତେଣୁ ତ ସଂଜ ମୋର ଏତେ ପ୍ରିୟ
ଏତେ ଆପଣାର
ସବୁ ସଂଜରେ ଆସ
ମନତଳ ବିଭୋର ବେହାଗ ହୋଇ,
ଆତ୍ମମନସ୍କ ତଲ୍ଲୀନତା ହୋଇ।

ଜାଣିଛ, ପରବର୍ତ୍ତି ପ୍ରଖର ସୂର୍ଯ୍ୟାଲୋକ
କି ଅମାବାସ୍ୟାର ନିଘଂଚ ଅଂଧାର
କେହି ବି ତୁମକୁ ମୋଠାରୁ
କରିପାରିବେନି ଦୂର।

ଯେହେତୁ ପ୍ରତି ସତ୍ୟ ସଂଜରେ
ତୁମେ ଆପଣାର ହୁଅ,
ଆଉ ପ୍ରତି ସଂଜ ସଂଗୀତରେ
ମୁଁ ହୁଏ ସମାହିତ ତୁମ ଭିତରେ।



# ଦ୍ୱନ୍ଦ

ଧ୍ୱସ୍ତ ଝାଉଁବଣର ଦେହକୁ
କେମିତି ସଜାଡ଼ିବି କହ !
କେଉଁ ନକ୍ଷତ୍ରର ଅକ୍ଷାଂଶରେ
ଥୋଇବି ଲୁଣ୍ଠିତ ମନ ।

ଜହ୍ନ, ତାରା, ଆକାଶ
କିଏ ଦେବ ଶୀତଳ ଆଶ୍ରୟ ?
ଜୀବନରମାନେ ଖୋଜୁଥିବା
ନୟାଂତ ଶରୀର,
ବିଭ୍ରାଂତ ମନ
କେବେ ବି ସୂର୍ଯ୍ୟାସ୍ତ ଦେଖି ନଥିବା
ଦୁଇ କଅଁଳ ଆଖି
ମହାଶୂନ୍ୟରେ ଇତଃସ୍ତତଃ ବାରବାର ।

ଏବେଖାଲି ଶୋଷ ଆଉ ଶୋଷ,
ଘାସର ଶିଶିର ବିଂନ୍ଦୁରେ
ମୁହଁ ଲଗାଇଲେ
ମେଂଟି କି ପାରେ ଶୋଷ ?

ଜୀବନ ଅଘୋରୀସମ ସମାନ ହେବାବେଳେ
ମଶାଣୀରୁ ମୁକ୍ତିପଥ ଅସ୍ପଷ୍ଟ
ମାତୃଗଂଠିରୁ ମଂଦିର ଅଶାଂତ ।



# ହାତ ପାପୁଲି

ତୁମ ସ୍ୱଚ୍ଛ ହାତ ପାପୁଲିରେ
ବିଶ୍ୱାସ ମୋ ବାଟବଣା ହୁଏ
ଆୟୁଷ ମାପେ,
ତୁମ ସହ ସାମିଲ୍ ହେବା ପରେ
ସାରା ମୁହୂର୍ତ୍ତ ଅର୍ଥମୟ ଲାଗେ।

ସେସବୁ ଲାଗେ ଭ୍ରମ
କରେ ବିଚ୍ୟୁତ
ତୁମ ସ୍ୱଚ୍ଛ ହାତ ପାପୁଲିରେ
ରେଖାଟିଏ ଆଂକିବାକୁ ବାକି
ତେବେବି ମୋ ନିରିହ ବିଶ୍ୱାସ
ହୁଏ ବାଟବଣା।

ସେ ନୁହଁ କେବଳଯେ ଏକ ସରୁ ରେଖା ।
ରେଖା ଯୋଖିବା ପୂର୍ବରୁ
ଉଷ୍ମ ବାଲୁଚର ଚରିଯାଏ ସାରା ସତ୍ତାରେ।

ଡହଳ ବିକଳ ଯୌବନ ଝଡ଼ିବା ଆଗରୁ
ପ୍ରେମଭରା ଆଂଜୁଳା ପାତି ହେଇଯାଏ
ଫଗୁଣ ସଂଧ୍ୟାରେ
ଭରିଦିଏ ନୂଆ ଭାବ, ସାରା ଦେହରେ।

ଯେତେସବୁ କାମନା ଚରୁଥିଲେ ମୋ ଉଦ୍ୟାନରେ
ବହୁରଂଗୀ ଫୁଲ ଆଉ ତାରା ହେଇ
ସମସ୍ତେ ଅଚାନକ ମ୍ଳାନ ପଡ଼ିଗଲେ
ଫଗୁଣର ରଂଗ ସାମ୍ନାରେ।

ଫଗୁଣର ରଂଗ ଜୀବନକୁ
କେବେ ରଂଗମୟ କରି ତ ନଥିଲା
ଉଦ୍ୟାନରୁ ଯେତେସବୁ କାମନାଂକୁ
ବିଦାୟ କହୁଥିଲା।

ତୁମ ସ୍ୱଚ୍ଛ ହାତ ପାପୁଲିରେ
ମୋ ନାଁଆରେ ଅଂକାଥିଲେ ରେଖା
ଫଗୁଣ ଛୁଇଁ ନଥାଂତା,
ନିଷ୍ଠୁର ଅନାଶକ୍ତିରେ
କାମନାମାନଂକୁ ମେଲାଣି ଦେଇ ନଥାଂତା,
ଭିତରେ ବାହାରେ ଚାରିଆଡ଼େ।

ସ୍ୱପ୍ନ ଓ ସୁରଭିରେ ମହକି ଉଠଂତା
ଜୀବନ ଜୀଇଁବା ଅର୍ଥମୟ ହୋଇଥାଂତା।



# ଛାତି ତଳ ବୋଝ

ଛାତି ତଳ ବୋଝକୁ
ଉତାରିବାକୁ
ଯାଏ ଧାଇଁ ତୁମ ପାଖକୁ
ହେଲେ କି କହିପାରେ ?
ଦିନ, ମାସ, ବର୍ଷଯାଏ ଗଡ଼ି
କହି ହୁଏନା...
ବୋଝ ଅଛି ବୋଲି
ତୁମ ସହ ମିଛ ସତ ଖେଳଟେ
ଏ ଯାଏ ଖେଳୁଛି।

ତୁମେ ତ ଦହଗଂଜ ନୀରବ ଡାକ
ଏଣୁ ଦେହ ମୋର ବୋହି ବୋହି ଚାଲିଛି
ଛାତିତଳ ବୋଝ କହି ତ ହୁଏନା
ଉତାରିବି ଭାବି ଧାଇଁଯାଏ ସିନା।

ଛାତି ତଳେ ଲୁଚିଥିବା ଶବ୍ଦ
ବୋଝ ହୋଇ ରହିଗଲା
କହି ଦେଲେ ଉତୁରି ଯାଆଂତା
ହେଲେ, ବୋଝ ଉତୁରି ଗଲେ
ମୋର ବୋଲି କହିବି କେମିତି ?

◆

# ନୀଳକୃଷ୍ଣ ଉଦ୍ଦେଶ୍ୟରେ

ତୋତେ ଭାବି ଚୁଂବନ ଦେଉଥିବାବେଳେ
ମନତଳେ ଆଂକିହୁଏ ଜୀବନର ମାନଚିତ୍ର,
ଛାତିରୁ କ୍ଷରିତ ହୁଏ ଅମୃତ।

ଚୁଂବନ ମାନେନା ବାଧା କି ବଂଧନ
କୁଟିଳ ସମୟର ରହସ୍ୟ ସ୍ପଂଦନ।

କେଉଁକାଳୁ ମହାକାଳର ଗର୍ଭରେ
ସାଇତା ଥିଲା ଯେ
ଏକାବେଳେ ଏତେ ଝରେ ଅମୃତ।

ବାକିଥିଲା ବାତ୍ସଲ୍ୟପ୍ରୀତିର ଶେଷ ସଂବୋଧନ
କେମିତି ଅଚାନକ ବଦଳିଗଲା,
ନୀଳକୃଷ୍ଣ ଉଦ୍ଦେଶ୍ୟରେ ହେଉ କି
ତୋତେ ନେଇ ଜୀଉଁଥିବା ଜୀବନରେ ହେଉ
ବାକିଥିବା ଡାକଟିଏ ହିଁ ବାକିଥିଲା।

ତୋତେ ଭାବି ଚୁଂବନ ଦେଉଥିବାବେଳେ
ମନତଳେ ଆଂକି ହେଇଯାଏ ଜୀବନର ମାନଚିତ୍ର।

ଅସଜଡ଼ା ଜୀବନକୁ ଆ' ସଜାଡ଼ି ଦେ,
ନିଭୃତ ଅଂଧାରକୁ ତୋ' ସୂକ୍ଷ୍ମ ଆଧିପତ୍ୟରେ
ଆଲୋକିତ କରିଦେ'।



# ନଷ୍ଟସ୍ମୃତି

ଆଉ କ'ଣ ବା ଲୋଡ଼ା ତୁମକୁ ?
ମୋ ଓଠରୁ ପିଛିଲା ଗୀତଟିଏ ହେଇ
ଖସିଯିବାପରେ
ଆଉ ବା କ'ଣ ଦର୍କାର
ତୁମ ସହ ଗୀତ ଖଂଜିବାରେ ।

ମୋର କିଛି ପାଇବାର ନଥିଲା,
ଯଦିଓ ଅସୁମାରି ଶୋଷର ଆର୍ଦ୍ରିରେ
ଜୁଡୁବୁଡୁ ତମାମ୍ ଜୀବନ ।

ରାତିମାନେ ଅପସରି ଯିବାପରେ
ଆଦୌ ଆସିବାକୁ ନଥିବା ଅଂଧାରରେ
ଖୋଜୁନି ଜମାରୁ ତୁମକୁ ।

ଜାଣିଶୁଣି କେଉଁକାଳୁ
ବାହାରି ଯିବାପରେ
ମୋ ପରିଧିରୁ ଯାକିଯୁକି ଅନ୍ୟମନସ୍କତାରେ
ସଜାଡୁ ସଜାଡୁ ଦୂରଂତରେ
ନଷ୍ଟସ୍ମୃତି ଏବେ ମୋତେ ଖୁବ୍ କଷ୍ଟ ଦିଏ,
ଭିତରକୁ ଭେଦେ
ଆଂଦୋଳିତ କରେ ।

ନୂଆ ସକାଳ ସହ ଭେଟ ହେଉ ହେଉ
ଆଉ ଏକ ଜନ୍ମ ଫେରିଆସେ
ସ୍ୱପ୍ନ ଭର୍ତ୍ତି ରାତି ଅପେକ୍ଷାରେ ବିତେ।

ରାତିମାନେ ଆଉ ଦୋହଲୁ ନାହାଁନ୍ତି,
ଗଣୁନାହାଁନ୍ତି ତାରା କି ଗଢୁ ନାହାଁନ୍ତି ଘର
ନିଖୋଜ ରାତିକୁ ଆଉ ଖୋଜିବାର ନାହିଁ
ତେଣୁ ବୋଧେ ଏମିତି ଏ ବେଳ।
ଆଉ କ'ଣ ବା ଲୋଡା ତୁମକୁ
ଏତେ ସବୁ ଘଟିଯିବା ପରେ ?

ହେଲେ ବି ଆମନ୍ତ୍ରିତ
ଉଦ୍‌ବିଗ୍ନ ଭାବଟିଏ
ଆକ୍ରମାକ୍ତା କରେ, ଖୋଜେ,
ବେସାଲିଶ କରିଦିଏ।

ସକାଳର ଏତେ ଉଜ୍ଜ୍ୱଳତା ପରେ
କିଛି ଅନ୍ଧାର ଦିଶେ
ଆଙ୍ଗୁଳାଏ ବିଶ୍ୱାସର କୃତାଞ୍ଜଳିରେ।

ସବୁକିଛି ଆବଦ୍ଧ ହୋଇଯାଏ
ବଂଦ ପାପୁଲିରେ
ଆଉ, ମୋର ନୀରିହ ବିଶ୍ୱାସ
ବାରଂବାର ବାଟବଣା ହୁଏ।

ଖୋଲିଦିଅ ଥରୁଟିଏ ପାଇଁ
ଚିରକାଂକ୍ଷିତ ବଂଦ ପାପୁଲିକୁ
ଖୋଲିଯିବା ପରେ ଦେଖିବ
ଚଂଦନ ହ୍ରଦରେ
ପ୍ରେମ ଆମ ସଂତରଣ କରିବ,
କାଚକେଂଦ୍ରୁ ଅସ୍ଥିର ତରଂଗରେ
ନଷ୍ଟସ୍ମୃତି ସ୍ଥିର ପ୍ରତିବିଂବ ହୋଇ
ପୁଣି ଲେଉଟି ଆସିବ।

◆

# ସେ ସକାଳ ଆସିବାକୁ ଡେରି

ଉଡ଼ଂତା ପ୍ରଜାପତିକୁ ଧରିବାକୁ ଯାଇ
ଅଂଧାରରେ ଆଜୀବନ ବଂଧା ହେଇଗଲି ।

ଜୀବନର ଯେତେ ରଂଗ ହେଇଗଲା ଧୋଇ,
ଅଭିମାନର ପୃଥିବୀରେ, ଏକା ହେଇଗଲି ।

ତଥାପି ସ୍ୱପ୍ନ ଭାଂଗେନା,
ତୁମମୟ ପ୍ରତ୍ୟୟରେ
ପୃଥିବୀଟେ ନିଶ୍ଚୟ ଆସିବ,
ଯେଉଁଠି ପରିପୂର୍ଣ୍ଣତାର ସୂର୍ଯ୍ୟାଲୋକରେ
ଏ ଯାଏଁର ଉଦାସ ଆକାଶ ହସି ଉଠୁଥିବ ।

ସବୁକିଛି ଉଜୁଡ଼ା ସଂଭାବନା ଓ
ଉଈଖିଆ ସ୍ୱପ୍ନର ଫସଲ
ସାକାର ରୂପନେଇ
ସେ ସକାଳ ଆସୁଥିବ ଫେରି
ଯଦିଓ ବୁଝୁଛି ଏ କଳାରାତି
ଏତେ ଶୀଘ୍ର ଲିଭିବାର ନାହିଁ,
ଯଦିଓ ସେ ସକାଳ
ଆସିବାକୁ ଅଛି ଆଉ ଡେରି ।



# ତୁମେ

ତୁମେ ଆସିବ ଅପେକ୍ଷାରେ
ଅନେକ କଥା ସାଇତିଛି।
ବାହାରେ କେତେ ଅଂଧାର
ବିଛାଡ଼ି ପଡ଼ିବାବେଳେ
ମୁଂଦାଏ ଆଲୁଅ
ସାନ୍ନିଧ୍ୟର ପଦ କେତେ ତୋଳି
ଗଭାରେ ଖୋସିବ
ତା'ପରେ ତୁମ ଯିବାର ଅନେକ ଦିନ ଯାଏଁ
ସେ ବାସ୍ନା ହେଉଥିବ, ମନେ ପଡୁଥିବ।

ଘର ସାମ୍‌ନାରେ ସଜାଥିବା
ଫୁଲ ତୋଡା
କଂଟାବୁଦା ପାଲଟିବା ପରେ
ଆତଯାତ ହେଉଛଂତି ଚିହ୍ନା ଲୋଭମାନେ।

ମୋର ବିଶ୍ୱାସ ଆଦୌ ଭୁଲିବନି
ଏ ମୂଲ୍ୟବାନ ମୋହକୁ
ଚୁଂବକରୁ ଛାଡ଼ିଯିବନି
ଲୁହାକଂଟାରୁ
ଚୁଂବକ ଶକ୍ତି ସରିବା ଯାଏଁ।



# ଚିଠି ଓ ସଂପର୍କ

ଅଳି କର, ଯୋରଦେଇ କହିଦିଅ
ଏଥର ପୋଷ୍ଟକାର୍ଡ ଦେଲେ
ନିଜେ ହିଁ ରଖିନିଅ ।

ବଂଦ ଲଫାପାରେ କିଂତୁ
ଭୟଲାଗେ ଲେଖିବାକୁ
କାହିଁକିନା ଲେଖୁଲେଖୁ କାଳେ
ଲେଖି ହେଇଯିବ
ସଂପର୍କ ଊର୍ଦ୍ଧ୍ୱରେ ଥିବା
ଚେତନାର କଥା ।

ଏଣୁ ବେଳେ ବେଳେ
ତାଗିଦ କରେ
ଅଧିକା ପାଣି ନ ଢ଼ାଳିବାକୁ
ମାଟି ଗଡ଼ାରୁ ଉତୁରି ଯିବନି
କାଳେ ଏ ସଂପର୍କ,
ହୃଦୟର ଶୂନ୍ୟତାକୁ ବାରବାର
ଦେଖାଇବା ବେଳେ
କହେ, ସବୁଦିନ ଶୂନ୍ୟ ରଖିବାକୁ
ଶୂନ୍ୟତାକୁ ଭରିବା ଚେଷ୍ଟାରେ
ସଂପର୍କ ନିବିଡ଼ରୁ ନିବିଡ଼ ହେବ
ଭିନ୍ନ ଏକ ମାନଚିତ୍ରରେ।

◆

## ରୁନୁ ପଂଡା

ସେମାନେ ସମସ୍ତେ ପସଂନ୍ଦ କରଂତି
ରୁନୁ ପଂଡାର ଅନାବିଳ ସୌନ୍ଦର୍ଯ୍ୟ,
ଏଣୁ ବିନା ଇଂଟରଭ୍ୟୁରେ ମିଳିଯାଏ
ଗୋଟିଏ ଏନ୍‌ଗେଜ୍‌ମେଂଟ୍‌।

କାମ କିଛି ଥାଉ କି ନଥାଉ
ସେ କିଂତୁ ଖୁବ ସୁଂଦର
ପ୍ରଥମ ଦିନ ହାଏ-ହେଲୋ-ନମସ୍କାର ଭିତରେ
ଭଦ୍ରାମି ଦେଖାଉଥିବା ସହକର୍ମୀମାନେ
ଧୀରେ ଧୀରେ ଅରଣ୍ୟର ବାଘ ଭଳି
ରାଂପତି, ଚିରଂତି, ଖୋଳଂତି
ତା’ ଦେହରେ ଗୁଂଫା ଖୋଜଂତି
ସେ ବେଶ ରାଗିଯାଏ
ମୁହଁଝାଡ଼ି ଦୁଇପଦ କହେ
ଆଉ ଫେରିଆସେ।

ମଦୁଆ ସ୍ୱାମୀ ମଦ ଛାଡ଼ିବାକୁ ନାରାଜ;
ମୁଣ୍ଡରେ ହାତ ମାରି ନିଜ ଭାଗ୍ୟକୁ ନିନ୍ଦିବାବେଳେ
ଭୋକିଲା ଛଅମାସର କୁନି ଝିଅକୁ ଚାହେଁ।

ଏମିତି କେତେ ଚାକିରୀ ଆସେ ଆଉ ଯାଏ,
କାହାରିକୁ କାମ କି ଲୋଡ଼ା
ଲୋଡ଼ା ଖାଲି କାମର ବାହାନାରେ
କାମନାକୁ ଛୁଇଁବା।

ସ୍ୱାମୀର ମୃତ୍ୟୁପରେ ଏବେ ଖୁବ୍ ନିଛାଟିଆ
ପୁଣି ପାଂଚୋଟି ପିଲାର ଅନାକାଂକ୍ଷିତ ବୋଝ।

କେତେ ସପନ ସାଇତାଥିଲା,
ହେଲେ କି ସେ ଜାଣିଥିଲା
ଜୀବନ ଏଠି ଗୋଟେ ପବନର ଘର।

ଏବେ ଆଉ ଆଗ ଭଳି ସୌନ୍ଦର୍ଯ୍ୟ ନାହିଁ,
ଅଛି ଖାଲି ଫୁଙ୍ଗୁଳା ବର୍ତ୍ତମାନ
ଲୁହ ଆଉ ଲହୁର ଆଲିଂଗନ।

# ମୃତ୍ୟୁ

ମୃତ୍ୟୁ ଚିକ୍‌କଣ ଆଉ ଗଭୀର ବୋଲି ତ
ଆଉ ଅଂଡାଳୁନି ଧୂଷର ଅସ୍ତିତ୍ୱକୁ,
ମୃତ୍ୟୁ ଶାଂତିର ଶେଷ ଆଧାର ବୋଲି ତ
ଅଶାଂତ ଦେହ ଓ ମନକୁ
ଫେରାଉ ନାହିଁ ସଂସାର ଭିତରକୁ।
ମୃତ୍ୟୁ, ଜାଣେ ଏକମାତ୍ର ଲକ୍ଷ୍ୟ ବିଂଦୁ

ଏଣୁ ଏ ଅପେକ୍ଷା ମୋର
ଦୀର୍ଘକାଳ ତୁମ ଉଦ୍ଦେଶ୍ୟରେ।
ଭିନ୍ନ ଭିନ୍ନ ମୃତ୍ୟୁ ଛୁଇଁବା ପରେ

ଆଜିର ସୂର୍ଯ୍ୟ ନୂଆ ଲାଗେ
ଏଣିକି ଶେଷ ଅନୁରୋଧ ମୋର
ଏଥର ଆସିବ
ଠିକ୍ ଯେମିତି ସବାଶେଷ ସ୍ପର୍ଶ ହୋଇ।
ଯେମିତି ଶଂକା ନଥିବ, ଆଉ ଥରେ ମରିବାର

ଯେମିତି ଇଚ୍ଛା ନଥିବ, ଆଉ ଜନମିବାର।

ଜନ୍ମମୃତ୍ୟୁର ପରପାରେ,
ଆସ ତୁମେ ମୃତ୍ୟୁ ମୋର
ଶେଷ ମୋକ୍ଷ ହୋଇ।



# ପ୍ରତ୍ୟାଶା

ଅଦିନ ବର୍ଷାପରି ସଦ୍‌ଭାବନାର ଶିହରଣ
ଖେଳିଯାଏ ମନର ନିଭୃତ କୋଣେ,
ଆଉ ମନ ଭିଜିଯାଏ
ଆବେଗର କାକର ବୁନ୍ଦାରେ।

ଶୁଭୁଥିଲା ଖୁବ୍ ଦୂରରୁ
ଅସ୍ପଷ୍ଟ କିଛି ମତାଣିଆ ଶବ୍ଦ,
ସେ ଶବ୍ଦର ହିଲ୍ଲୋଳରେ
ଆନମନା ହୃଦୟ
ଉଚ୍ଚାଟିତ ହୋଇଉଠେ
ଶୂନ୍‌ଶାନ୍ ପୃଥିବୀ ବକ୍ଷରେ।

ହାତ ପାପୁଲିରେ ସାଉଁଟି ଆଣିବାକୁ
ଯେତେ ମନ କଲେ ବି
ଖୋଲା ପାପୁଲି ଆହୁରି ଖାଁ ଖାଁ ଦିଶିଯାଏ
ପ୍ରଶସ୍ତ ଅଂଧାରରେ ।

କେବେ ଧରା ଦେଉ ନଥିବା ସତ୍ତାକୁ
ଚୀରକାଳ ଚାହିଁବା ହୁଏ
ଅତି ଅପଣାର ହେବା ପରେ ।
ନିଶ୍ଚୟ ଫେରିବ
ପ୍ରତ୍ୟୟର ଦୀପଟିଏ ହେଇ ଜଳିବା ହୁଏ
ରାସ୍ତା ସବୁ ସରିଯାଏ
ତପସ୍ୟାର ଅଂତହୀନ ନିଷ୍ଠା
ସେମିତି ଲଂବିଥାଏ ଅପେକ୍ଷାରେ ।



# ଏକା ଏକା

ମୁଁ କାହିଁକି ତୁମର ହେବି
ତୁମେ ବା କାହିଁକି ମୋର ?
ଏଠି ଯଦି କେହି କାହାର ନୁହେଁ
ମୁଁ କେମିତି ତୁମର ?

ସଂପର୍କ ଯଦି ଶେଷ ସତ୍ୟ ନୁହେଁ
କାହିଁକି ଏ ପ୍ରହସନ... ?
ଏଠି ଯଦି କିଛି ସତ ନୁହେଁ
ତୁମ ସହ କାହିଁକି ସଂପର୍କ ?

ସବୁ ଯଦି ମିଛ
ମୁଁ କାହିଁକି ମିଛ ନହେବି,
ସତ ମିଛର ଦୋଛକି ବିଂଦୁରେ
ବାଟବଣା ହେବା ଅପେକ୍ଷା
ବରଂ ଭଲ ନିଜ ବାଟ ଖୋଜି
ଏକଲା ଚାଲିବି ।

କାହାକୁ ସାମିଲ କରିବିନି
ଦ୍ୱଂଦ ଭର୍ତ୍ତି ଜୀବନରେ,
ସଂପର୍କମାନଂକୁ
ନିଜନିଜ ମାନଚିତ୍ରରେ ଛାଡ଼ି
ଶୂନ୍‌ଶାନ୍ ନିର୍ଜନ ରାସ୍ତା ଗଢ଼ିବି
ଅପାର୍ଥିବ ଶାଂତିର ସଂଧାନରେ
ବରଂ ଅବଶିଷ୍ଟ ଜୀବନ ଏକେଲା ଚାଲିବି
ଖାଲି ଏକେଲା ଚାଲିବି।



# ସତ୍ୟ

ବାପା ଟେକି ଦେଇଥିବା ପ୍ରେମର ହାତରେ
ମାଆ ଫିଂଗି ଦେବାପରେ ଗର୍ଭ ବେଦନାରେ
ପୃଥିବୀ ଭାରିଭାରି ଲାଗେ ଅସହଣୀ ତାତିରେ।

କେମିତି ଏତେ ଉଷ୍ମତା ସହିବି
ଅନାଦର ଆଉ ଅନାଶକ୍ତିରେ,
କେମିତି ସଜାଡ଼ିବି ଏତେସବୁ ହିଂସ୍ର ପ୍ରତାରଣା
କେମିତି ପାଶୋରି ଯିବି
ଏଠି ଶାଂତ ପବନ ଝଡ଼ ରୂପ ନିଏ
ପ୍ରୀତି ଭରା ଖୋଲା ଆକାଶରେ ?

ମାଆ ତ କହେନି କେବେ ଗର୍ଭରେ ଥିବାବେଳେ
ପୃଥିବୀ ଖୁବ୍ କଂଟାମୟ
ତୁ ରହିଥା ଏମିତି ମୋ ଗର୍ଭରେ।

ବାପା ବି ଆଦୌ ବିଚାର କରଂତିନି
ପ୍ରେମ ବାଢ଼ିବାବେଳେ
ପୃଥିବୀର ଯଂତ୍ରଣାକୁ ଖାତିର ନକରି
ଆମଂତ୍ରଣ କରଂତି
ସହିନେବାକୁ ପୃଥିବୀର କ୍ଳାଂତିକୁ।

ଗର୍ଭରୁ ଫିଂଗିବାପରେ
ଯେତେସବୁ ଶୋଷ ଏଠି କୋଳାଗ୍ରତ କରେ
ମେଂଟି ପାରେନା ଶୋଷ ମୋର
ଥରୁଟିଏ ମେଂଟାଇଦିଅ ଶୋଷକୁ
ଯେମିତି ଫଟାବିଲର ଶୋଷକୁ ମେଂଟାଇଦିଏ ମେଘ।

ମେଘ ବି ତା’ ଗର୍ଭରୁ ବର୍ଷାକୁ ଛାଡ଼ିବା ପରେ
ପୃଥିବୀକୁ ପୁଣି ସାଉଁଟି ନିଏ ସୂର୍ଯ୍ୟ କିରଣରେ
ନିଜସ୍ୱ ପରିଧି ଭିତରକୁ
ମାଆ କିଂତୁ ଆଉ ଫେରାଇନେଇ ପାରେନା
ନିଜସ୍ୱ ଗର୍ଭ ଭିତରକୁ।

କେମିତି ବଂଚିବି ମାଆ
ଯଂତ୍ରଣା ଯେ ଏଠି ପ୍ରତି ପାଦରେ
ଅନେକ ଗଂଗା ସ୍ନାନ ପରେ ବି
କ୍ଷତାକ୍ତ ହୁଏ ମୁଁ
ସଂସାର ମାୟାରେ।

ଏତେ ପରେ ମାଆର ପଣତ ହିଁ
ସବୁ ଯଂତ୍ରଣାକୁ ପୋଛି ଦେଇପାରେ।

ହେଲେ, ଅନେକ ଯଂତ୍ରଣା ପରେ ବି
ପାଏନା ମାଆର ସେହି ପଣତ
କି ଶୁଖି ପାରେ ନା ଲୁହର ସ୍ରୋତ
ଯେହେତୁ ମାଆକୁ ମୁଁ ଏଯାଏଁ ପାଇ ତ ପାରିନି।

ମାଆଗୋ ତୁ ହଜିଲୁ କେଉଁଠି
ବନସ୍ଥରେ ନୁହେଁ କି
ବାୟୁରେ ନୁହେଁ
କି ସମୁଦ୍ରର ଜଳ ଭଉଁରୀରେ ନୁହେଁ
କେଉଁଠି ତୋର ବାସ, ଯାହାକୁ ମୁଁ ଦେଖିପାରୁନାହିଁ।

ଦିଅ ମାଆ ମୋତେ ସଞ୍ଜୟର ସେହି ବିଶେଷ ଦୃଷ୍ଟି
ଯେଉଁଠି ପାରିବି ମୁଁ ତୁମକୁ ଦେଖି।

◆

# ମିଛ ଦୁନିଆଁ

ପ୍ରାତଃ ବେଳାରେ ହେବାପରେ ଶୁଦ୍ଧ
ଆଉ କରନି ଅଶୁଦ୍ଧ,
ଏତେସବୁ ପାପଂକୁ ଆଦରି
ପ୍ୟାପନିକଟିଏ ହେବା ଆଗରୁ
ନିଜକୁ କରିନିଅ ଶୁଦ୍ଧ।

ପାରୁଛ ଯଦି ସତ୍ୟର ସାହଚର୍ଯ୍ୟ ନିଅ
ପୁଣ୍ୟର ଶୀର୍ଷାୟନରେ ପହଂଚିବାକୁ
ତା'ପରେ ମୁକ୍ତିର ଦିଗଂତ ମିଳିବ।

ପୋଶିଲା ଶାରୀ ଛୁଆ ମାନି ଆସିଲାଣି,
ଯେତେସବୁ ଅଶୁଦ୍ଧ ଲୁହ ଗଡ଼ିସାରିଲାଣି,
ଆଉ ପାପର ଢେଉ ଭାଂଗନି
ଶୁଷ୍କ ମରୁଭୂମି ଉପରେ
ସମୁଦ୍ରରେ ସ୍ଥିରତା ଆଣନି।

ଆଉ ଶୁଣିବାର ନାହିଁ
ମଧୁର କଣ୍ଠରେ ମିଛ ଗୀତ
ମିଛ ଦୁନିଆଁରେ ଗଢ଼ିବାର ନାହିଁ
ଅଳୀକ ସଂସାର।



# ନିର୍ବୋଧ

ନାରୀମାୟା ଅଭେଦ୍ୟ ଏକଥା ଜାଣିବି
ପୁରୁଷ ପାଲଟେ ନିର୍ବୋଧ,
ଆଖିରେ, ଓଠରେ, ବକ୍ଷରେ, ନାଭିରେ
ଅଂଡାଳୁଥାଏ ଜୀବନର ମାନଚିତ୍ର।

ମିଛ ମିଛ ଶବ୍ଦ ଖଂଜେ
ଓଠରେ ଓଠ ଲଦେ
ସାରା ଦେହରେ ହାତ ବୁଲାଏ।

ଏ କାମନାମାନେ ଖାଲି ବିଚରଣ କରଂତି
ମଣିଷକୁ ଆଦିମତାର ସ୍ପର୍ଶ ଦିଅଂତି
ଆଉ ଉଦୟହୁଏ ପଶୁତ୍ୱ
ସବୁ ସୂକ୍ଷ୍ମପଣ ହେଇଯାଏ ଚୂର୍ଣ୍ଣ।
ସମୟ ପୂର୍ବରୁ
ସିଦ୍ଧାଂତ ନେବାକୁ ହେବ
ନଚେତ ଜୁଇ ହୋଇ
ମଶାଣିରେ ଦେହ ଜଳିଯିବ
ଓଠ ଦୁଶିବନି
କି ଆଖିରେ ଅସୁମାରୀ ସ୍ୱପ୍ନ ଭରି ପାରିବନି
ବକ୍ଷରେ କି ନାଭିରେ
ତୁମ ନାମ ଲେଖା ହୋଇପାରିବନି।

◆

# ଜୀବନ

## (୧)

ଜୀବନ, ଜୀଇଁବା ଭିତରେ
ନିତି ନୂଆ ଦୁର୍ଘଟଣାଂକ ଶୋଷ,
ଯେତେସବୁ ଘଟଣା ଦୁର୍ଘଟଣାରେ
ବିତୁଥିବା ସଂଜ ଓ ସକାଳ
ସମୟ ପୂରିଗଲେ
ସବୁକିଛି ମାଟିରେ ସମାହିତ।

ଦେହକୁ ପଛକରି ଯାଉଥିବା ଆତ୍ମା
ଆଶ୍ରୟ ଖୋଜିନିଏ
ନିର୍ବେଦ ପାଲଟି ଯାଏ
ଛାଡ଼ି ଆସିଥିବା ଦେହ
କ୍ରମଶଃ ବିସ୍ମୃତି ପାଲଟେ
ଏତେସବୁ ମୁହୂର୍ତ୍ତଂକ ସହ
ସାଲିଶ କଲାପରେ।

ସେ ଛାଡ଼ି ଯାଇଥିବା ଅସୁମାରି ସଂପର୍କମାନେ
ଧିରେଧିରେ ପାଶୋରି ଆସଂତି,
ସେମାନେ ବି ମାଟିରେ ରାସ୍ତା ଖୋଜଂତି।

ମାଟି ଭିତରେ ସଂପର୍କକୁ ଖୋଜିବାବେଳେ
ସବୁକିଛି ଅଂଧାର ହେଇସାରିଥାଏ
ଯେତେ ସବୁ ଶବଂକର ଶୋଷ
କ୍ରମଶଃ ମେଂଟିସାରିଥାଏ।

(୨)

କିଏ ଯଦି ଥରେ କହିଯାଆଂତା
ଦେହରୁ ଆତ୍ମା ଛାଡ଼ିଯିବା ପରେ
ନୂଆ ଘର କେଉଁଠି ଗଢ଼ିବ
ତେବେ ପ୍ରତିକ୍ଷଣ ଦହଗଂଜ ପ୍ରାଣକୁ
କରିହୁଅଂତା ମୁକ୍ତ ଓ ଆଶ୍ୱସ୍ତ।

ତା'ପରେ ଦେଖଂତି କିଏ କେତେ ଖେଳୁଆଡ଼
ଘଟଣା ଦୁର୍ଘଟଣାମାନଂକୁ
ପ୍ରଶସ୍ତ ରାସ୍ତାରେ ଯିବାକୁ ଦିଅଂତି,
ଏ ଜନ୍ମର ସବୁ ପାପଂକୁ
ସଜେଇ ରଖଂତି କ୍ରମିକ ସଂଖ୍ୟାରେ।

ନୂଆଘର ଗଢ଼ିବା ପୂର୍ବରୁ ସବୁ ଆସବାବପତ୍ର
ଖରିଦ କରି ଧୋଇଦେଇ ନିର୍ମଳ କରଂତି
ଫୁଲ ଓ ଘାସରେ ପାଦକୁ ବଢ଼ାଂତି।

ଏତେସବୁ କ୍ଳେଶ ପରେ
ଆଉ ବା କ'ଣ ବାକି ରହିଯାଏ ?

ଚଉରାଅଶୀ ଲକ୍ଷରେ ଘୂରିବା ଅବା
ବାଟେଘାଟେ ଅଟକିଯିବା
ସବୁଯଦି ନିୟତି ନିର୍ଦ୍ଧିଷ୍ଟ
କାମନା ଓ ସଂଭୋଗର ଚକ୍ରରେ ଘୂରିବା
ଆଉ କେତେକାଳ
ପାପ ଆଉ ପ୍ରତାରଣାର ସମୁଦ୍ର ଗର୍ଭରେ।

(୩)

ପ୍ରତିଟି ଆତ୍ମାର ଖେଳ ସେ ଖେଳୁଥାଏ
ସଭିଂକ ଅଲକ୍ଷରେ ।

ଏଣୁ ତ ଏତେ କଳରବ ଶୁଭେନା କାହାକୁ,
ଯା'ଖାଲି ଆଗରୁ ଘେନିଥିବା ଜୀବନ ଯଂତ୍ରଣା
କେମିତିବା ଏତେ ଶୀଘ୍ର ଶେଷ ହୋଇଯିବ ?
ଆପେ ଅପସରି ଯାଉଥିବା ଘଟଣାମାନଂକୁ ନେଇ
ଏତେ କାହିଁକି ଶୋକ ଓ ସଂତାପ
ଦୁଃଖ-ସୁଖ, ହାନୀ-ଲାଭ, ପରାଜୟ-ଜୟର
ହିସାବ ଖାତାରେ ଗୁଂଥି ହେଉଥିବା ।

ଏଣୁ ପ୍ରତିଟି କ୍ରୀୟା ଓ ପ୍ରତିକ୍ରୀୟାରେ
ନିର୍ବିକାର ସେହି ଅସୀମ ପୁରୁଷ ।

ରାଗ, ଭୟ, କ୍ରୋଧ, ଦୂର କରି ଯିଏ
ପ୍ରେମ, ସ୍ନେହ ଯୋଡ଼ିଦିଏ
ନିର୍ଭୟତାର ଜୀବନଚକ ଶାଂତିରେ ଗଡ଼ିଯାଏ ।

ଏସବୁ ସତ୍ୟକୁ ଜାଣି ମଣିଷ
ଘାଂଟିହୁଏ ନିତିଦିନ
ସଂସାର ମୋହକୁ ଛାଡ଼ି ନପାରି
ଅଶାଂତିରେ ରହେ ପ୍ରତିକ୍ଷଣ ।



# ଢେଉ

ଅସଂଖ୍ୟ ସାପଛୁଆ ଢେଉ ଭାଂଗୁଥିଲେ
ଯମୁନା ପାଣିରେ,
ଗୋଟାକ ଉପରେ ଆରଟି ଲଦି ହେଇ
ପାରି ହେଇଯାଉଥିଲେ।

ଘାଟରେ ଛିଡ଼ା ହୋଇ ହାତ ଟେକି
ମୁଁ ସେମାନଂକୁ ଆମଂତ୍ରଣ କରେ।

ମୋ ଆଂଜୁଳାକୁ ଆସିଲେ
ସାପଛୁଆମାନେ ସ୍ଥିର ହୋଇଯାଂତି
ସାଲୁବାଲୁ ହୁଅଂତିନି ଆଉ
ଅସ୍ଥିର ଉନ୍ମାଦନାରେ।
ଆଂଜୁଳାରୁ ଯମୁନାପାଣିକୁ ଉତୁରି ଯିବାପରେ
ପୁଣି ସେହି ଇତସ୍ତତ ଭାବ
ପ୍ରତି ମୁହୂର୍ତ୍ତରେ ଜୀଇଁବା ମରିବାର
ଲାଗି ରହିଥାଏ ଜଳ ଭଉଁରୀରେ।

କୂଳର ନିର୍ମମପଣ ଭଲ ଲାଗେନା ବୋଲି ତ
ଲହଡ଼ି ଭାଂଗି ବାହାରି ଆସଂତିନି ସେମାନେ,
ଆସିଲେ ନଈର ମାୟାକୁ
ନଫେରିପାରିବାର ଭୟରେ
ଗଭୀରରୁ ଗଭୀରତାକୁ ଜାରିଥାଏ
ଚିରଂତନ ଯାତ୍ରା ସେମାନଂକର।



# ଚିଠି ଓ ଡାକବାଲା

ଦ୍ୱିପହରେ ଡାକଦେଉଥିବା
ଡାକବାଲା
ଚିଠି ସବୁ ହାତରେ ବଢ଼ାଇବାବେଳେ
ଆସନ୍ନ ହେଇପଡୁଥାଏ
ଧଡ଼ଧଡ଼ ଲଫାପାର ମୁହଁ
ଥରିଉଠେ ଶୀତରେ ଥରୁଥିବା ଓଠପରି
କି ପ୍ରେମିକ ଛୁଇଁଲା ଭଳି।

ପୋଷ୍ଟକାର୍ଡ କଅଁଳ ହାଡ଼ପରି
ମୋଡ଼ି ମକଚି ହେବାବେଳେ
ଥରାଏନା ଦେହକୁ
ତା' ଦେହରେ ଖୋଲାମେଲା କଥା
ଏଣୁ ଭୟ ବି ଛୁଏଁନା।

କେତେବେଳେ କେମିତି
ଡାକବାଲା ହାତରେ ମୃତ୍ୟୁର ସଂଦେଶ
ଘର ଭିତରକୁ ମାଡ଼ି ଆସୁଥିବାବେଳେ
ଦୂରତ୍ୱ ମାପୁଥାଏ ଏକାଂତ ବେଳାରେ
ସଂପର୍କ ଖୋଜୁଥାଏ
ଆହା ଚୁଚୁ... ଶବ୍ଦରେ ।

ଚାକିରି ଆଶାରେ
ଦେଇଥିବା ଦରଖାସ୍ତର ଜବାବ୍ ଆସେ
ଲଫାପା ଭିତରେ କି
କେଉଁ ମାଟିହାଂଡିରୁ
ଉତୁରୀ ପଡ଼ିଥିବା ପ୍ରେମ
ହାତ ପାତିଦିଏ ଲଫାପା ଭିତରେ ।

ପୋଷ୍ଟକାର୍ଡ, ଲଫାପା, ଟେଲିଗ୍ରାମ,
ଇନ୍‌ଲ୍ୟାଂଡ ଲେଟର
ଏମାନେ ସମସ୍ତେ ଆସଂତି
ନିଜସ୍ୱ ଭଂଗୀରେ
ଡାକବାଲା ସାଥିରେ
ସାଇକେଲ ସାମ୍‌ନାରେ
ଓହଳା ଥିବା ବ୍ୟାଗ ଭିତରେ ।

ଅନେକ ଘର ଠିକଣା ଲେଖାଥିବା
ଚିଠିମାନେ ପରସ୍ପର ସଂପର୍କ ଖୋଜୁଥାଂତି
ଡାକବାଲାର ବ୍ୟାଗ ଭିତରେ ।

ଗୋଟିଗୋଟି ବ୍ୟାଗ୍‌ରୁ ବାହାରିବାବେଳେ
ପରସ୍ପରକୁ ଭୁଲିଯାଆଂତି
ନିଜର କାହାକୁ ପାଇଲେ ।



# ମୋଡ଼

ମୋଡ଼; ଆସେ, ଯାଏ
ତା'ର ମାୟାରେ
ବାଟ ହୁଡ଼ିବା ହୁଏ,
ଇଚ୍ଛାରେ, ଅନିଚ୍ଛାରେ।

ସମୁଦ୍ରକୁ,
ନିଘଂଚ ଜଂଗଲ ମଧ୍ୟକୁ,
ଶୁଖିଲା ମାଛ ଗାଡ଼ିଆକୁ
ଯେଉଁଠି ମାଛ ଆଉ ନଥାଏ
ଜୀବନ ପାଇବାକୁ
କି ମଣିଷ ନଥାଏ ଆହା କହିବାକୁ,
ହଜିଯିବାର ବି ଭୟ ଥାଏ
ଆକାଶକୁ ଉର୍ଦ୍ଧ୍ୱମୁଖ କରିବାରେ
ଝୁଂଟି ଯିବାର ଭୟ ଥାଏ
କିଂତୁ ଜୀବନରେ ଆସେ ମୋଡ଼
ଭାଂଗେ ନୀଡ଼
ବସାଏ ଘର
ଖୁସୀରେ ବିଭୋର କରିଦିଏ
ଦୁଃଖର ପରିସୀମା ଆଂକିଦିଏ
ତେବେ କ'ଣ ଜୀବନ ସରିଯାଏ ?

ନା' ଜୀବନରେ ଆସେ ମୋଡ଼
ଜଣାଂତରେ ଅଜାଣତରେ।



# ଚଷମା

ଚଷମା ଆରପାଖ  ମୋର ନୁହେଁ,
କେମିତିବା କହିଦେବି ତୁମକୁ ଭେଟିଛି
ଇନ୍ଦିରା ପାର୍କରେ କି
ରହୁଥିବା ମୋର ପୁରୁଣା ଘରେ ?

ସେଦିନ ମୋ ରାସ୍ତା ଉଗାଳି
କହିଲ, କେଉଁବାଟେ ଯାଉଛ ?

କେମିତି କହି ଦେଇଥାଂତି
ଯେଉଁଠିକି ଯାଉଛି
ସେ ଠିକଣା ନୁହେଁ ମୋର।

ଜୀବନକୁ ମାନେ କରି ଠିକଣା ଖୋଜିବା
ଠିକଣା ଠିକଣାରେ ସବୁ ଭୁଲିଯିବା।

କ'ଣ ଏଠି ନିଜର ଯେ
ସବୁକୁ ଖାଲି ଆବୋରି ଧରିବା
ଗୋଟିଏ ସଂଦିଗ୍ଧ ଚାହାଣୀରେ ଦେଖିବା
ଚଷମା ବାଟ ଦେଇ ଆରପାଖ ଚାହିଁବା
ସେଠିର ଭଲ ଲାଗୁଥିବା କିଛିକୁ ଆପଣେଇବା
କିଂତୁ ନିଜର କରି ନପାରିବା ଶୋଷ।

କେବଳ ଚଷମା ହିଁ ମୋର କାହିଁକି ନା
ଚଷମା ବାଟଦେଇ ହିଁ ଯାହାକିଛି ଦେଖିବା।



# ଧୂଆଁ

ଧୂଆଁ ସବୁକୁ ଅସ୍ପଷ୍ଟ କରିଦିଏ
ନିଜର ନିର୍ମୋହ ପାଗଳାମିରେ ।

ଧୂଆଁ ପ୍ରିୟ ନହେଲେ ବି
ଆଚ୍ଛାଦିତ ହେଇଯାଏ ନିଜେ ନିଜେ
ଛାତିରେ, ଆକାଶରେ, ଶୂନ୍ୟରେ,
ତେବେ ଶୂନ୍ୟରେ ଉଡୁଥିବା
ସିଗାରେଟର ଧୂଆଁ
ଦେଖୁଦେଖୁ ମିଶିଯାଏ
ଶୂନ୍ୟରେ ଶୂନ୍ୟରେ
ଆକାଶରେ ଆଚ୍ଛନ୍ନ ଧୂସର ମେଘ
ହଜିଯାଏ କେଇ ମୁହୂର୍ତ୍ତରେ
ତେବେ କି ମିଳେଇ ଯାଇପାରେ
ଛାତିକୁ ଜାବୋଡ଼ି ଧରିଥିବା ଧୂଆଁ ?

ଯେ କି ଅସ୍ପଷ୍ଟ କରିଦିଏ ସବୁ ସତ୍ୟକୁ ।



# ବଦଳୁଛି ପୃଥିବୀ

ପ୍ରତିଦିନ ବଦଳୁଛି ପୃଥିବୀ
ବାୟୁମଂଡଳର ତାପମାନ
ଏବଂ ଶୂନ୍ୟର ଆକାର।

ନିତି ବଦଳୁଛଂତି ଲୋକ, ସଂଗଠନ
ଆଉ ଘୋଷଣାପତ୍ର
ବହୁମତ ଓ ସଂସ୍କୃତିର ପରିଭାଷା
ଗଢ଼ାଯାଉଛି ନିତିଦିନ।

ପ୍ରତିଦିନ ସଂବାଦପତ୍ର ବଂଟାଯାଉଛି
କଳା ସଂବାଦ, ରାକ୍ଷସ ପ୍ରବୃତ୍ତି
ଏବଂ ଗୁପ୍ତ ଅନୁସଂଧାନ
ଏହାର ପ୍ରଭାବ ନାହିଁ।

ବଂଦ, ଶୋଭାଯାତ୍ରା, ସ୍ଲୋଗାନ
ଦିନକୁ ଦିନ ଧରାପଡୁଛି
ରାଜନେତାଂକ ଅତୀତ ଦୁର୍ନୀତି, ଦଖଲ।

କ୍ରେନପରି ଉଠିବା ପଡ଼ିବା
ପୁଂଜିର ହାତରେ
ଅସ୍ତ୍ର ବଂଦ ହେବା ପରେ
ଲୋକଂକୁ ଶାଂତି ପାଇଁ
ନେଇଯାଉଛି ଯେଉଁଠି ସେଇଠି।

ଏପରି ସମସ୍ତ ହାତ
ସିଂହାସନର ପଛକୁ
ଟ୍ରେଜେରୀ ଆଡ଼କୁ ବଢୁଛି ।
ମଂଚ ଉପରେ
ଇନ୍‌କିଲାବ୍ ଜିଂଦାବାଦ୍‌ର ସଂବାଦ ।

ବିବାଦଗ୍ରସ୍ତ ଦେଖାଯାଉଛି
ଝଂଡା, କ୍ୟାଲେଂଡର
ରଂଗୀନ ବାଇସ୍କୋପ,
ନିର୍ବାଚନ ଚିହ୍ନର ନକ୍ସା
ନିତ୍ୟ ବଦଳୁଛି ଇତିହାସ, ପୃଥିବୀ
ଦେଶ-ଦେଶାଂତରର ଦୃଶ୍ୟ
ଶାଂତିର ଭାଷା
ଏବଂ ସମୃଦ୍ଧିର ଅର୍ଥ
ଏବେ ବି ବହୁମତର ସ୍ୱପ୍ନ ।

◆

# ଜନ୍ମ ଅଧ୍ୟାୟ

ଗର୍ଭରୁ ନଅମାସର ସଂଚିତ ସଂପତ୍ତିକୁ
ମୁକ୍ତ କଲାବେଳେ ସଂପର୍କୀୟଙ୍କ ଜମେ ଭିଡ଼
ଖବର ନିଅଂତି; "ପୁଅ କି ଝିଅ" ?
ପୂର୍ବରୁ ଝିଅଟେ ଥିଲା,
ଆଉ ଥରେ ଝିଅ ଜାଣି ଉଣା ହୁଏ ମନ
ଆଶା ଥିଲା ଏଥର "ପୁଅ"।

ପୁଷ୍ପାମ୍ୟାଡ଼ାମ କେତେ ବୁଝାଂତି
ଏଥିରେ ମାଆର ଦୋଷ ନାହିଁ
ବାପାର ହରମୋନ୍‌କୁ ନେଇ
ପୁଅ କିଂବା ଝିଅ ହୋଇଥାଏ
କେ କେବେ ବୁଝେ କି ଏସବୁ
ଏଣୁ ଶାଶୁ, ନଣଂଦ, ଦିଅର ପଛ କରଂତି
ପିଲା ଫିଂଗିଥିବା ମାଆକୁ।

ସମସ୍ତେ ପଛ କଲେ ବି ବେଦନା ସହିଥିବା
ମାଆ କ'ଣ କେବେ ପଛ କରିପାରେ
ନଅମାସ ସାଇତା ସଂପତିକୁ,
କୋଳାଇ ନିଏ, ଆଦର କରେ
ଗେଲରେ ତା'ମୁଂଡରେ ହାତ ଆଉଁସି ଦିଏ
ଚୁମାଟିଏ ଦିଏ,
ତା' ସୁଖିଲା ଓଠରେ ସ୍ତନକୁ ଗୁଂଜେ।



# ମଲାମାଛ ସହ ପ୍ରୀତି ଯୋଡ଼ା

ସଂପର୍କମାନ ଗଢ଼ି ସାରିବାପରେ
ଅଚାନକ କବର ନେବାକୁ ହୁଏ ମାଟିରେ;
ଏତେବେଳକୁ ଶବ କହି ସାନ୍ନିଧ୍ୟ ଯୋଗାଡ଼ିବାବେଳେ
ମାଟି ଆଶ୍ରୟ ଦିଏ ତା' ନିଭୃତ କୋଳରେ।

ପ୍ରିୟଜନଂକ ନିର୍ଦ୍ଦୟତାର କଥା ମନେପଡ଼େ
ଅଂଧାର କବର ଘରେ,
ଦେଲାପରେ ଛାଡି
ସବୁ ଶେଷହେବାପରେ,
ଜୀବନକୁ ତର୍ଜମା କରିବା ହୁଏ
ଏତେ ସବୁ ସଂପର୍କର ଭିଡ଼ ଭିତରେ
ଶବ ପାଲଟି ବିଚରଣ କରିବା ହୁଏ।

କିଛିଦିନ ପରେ ସଂପର୍କମାନେ
ପଛକରି ଯାଆଂତି ଭୁଲି ବି ଯାଆଂତି
ହେଲେ, ସମସ୍ତେ ଶବ ପାଲଟିବେ
ଫେରି ଆସିବେ ମା କୋଳକୁ।

କବର ଭିତରେ ରହି ମାଟିକୁ ଆଶ୍ରୟ ଦେଲାପରେ
ଶବମାନେ ସଂପର୍କକୁ ଖୋଜିବା ହୁଏ,
ସେତେବେଳେ ମାଟିର ନିଚୋଳ ଆଲିଂଗନ ଛଡ଼ା
ଆଉ କେହି ନିଜର ନ ଥିବେ।

ଏ ନିର୍ଜନ ଦ୍ୱୀପକୁ ଫେରିବା ଜାଣିବି
ସଂପର୍କ ଖୋଜାଯାଏ ପରସ୍ପର ଭିତରେ,
ଯେମିତି ମାଛ ବଜାରରେ
ମଲାମାଛ ସହ ପ୍ରୀତି ଯୋଡ଼ିବାରେ।



# ଆଶକ୍ତି

ଘର ସେ ପାଖକୁ ଥିବା ପର୍ବତ
ଦଲକାଏ ପବନ ଫିଂଗିବା ପରେ
ଆଉ କି ବାକିଥାଏ କହିବାକୁ ?

ଅଗଣାର ଦଉଡ଼ିଆ ଖଟପାରେ
ଅତୀତ ମାପିବାବେଳେ
ଆଉ କି ଖୋଜିବା ହୁଏ ଆଗକୁ ?

ବୋଉ ଛ'ତିଅଣ ନ'ଭଜା ପରଷିବା ପରେ
ଆଉ କି ବାକି ରହେ ସ୍ନେହ ମାପିବାକୁ ?

ବାପା ଔଷଧ ପାଇଁ ଉଷୁମ ପାଣି
ମାଗିବାପରେ
ଆଉ କି ଭୟ ରହେ ଉତୁରି ଯିବାକୁ ?
ଏତେ ସବୁ ଶୀତଳତା ପରେ ବି ଉଷ୍ମତା
ଶେଯ ଉପରେ
ଏପାଖ ସେପାଖ ହେବା ବେଳକୁ ।



## ଖଜୁରୀ ଗଛ

ଖଜୁରୀ ଗଛ ତଳକୁ ଝୁଲୁଥିବା
ବାଇ ଚଢ଼େଇର ବସା,
ମୋ ଅନ୍ୟମନସ୍କତାରେ
ଫେଣେଇ ହେଉଥିବା
ସୁନୀଳ ସ୍ୱପ୍ନ,
ବାସ୍ତବତା ଅପ୍ରତିହତ,
ସବୁ ଅପ୍ରକାଶ୍ୟ ନୂଆ ଜୀବନ୍ୟାସ।

ଦଲ୍‌କାଏ ପବନର ହିଲ୍ଲୋଳ
ଉଡ଼ିଗଲା ଶବ୍‌ଦ କୋଷରୁ
କିଛି ସ୍ୱପ୍ନିଳ ଶବ୍‌ଦ...
ଅସଂପୂର୍ଣ୍ଣ ଜୀଜୀବିଷାରୁ ଶୁଭେ
ତୃଷ୍ଣାର ପ୍ରତିଧ୍ୱନୀ
ପୂର୍ଣ୍ଣତା ଆଣିବାକୁ ଯାଇ
ଏବେ ଅନେକ ଖଜୁରୀକଂଟା
ଯା'ଉପର ଦେଇ ରକ୍ତାକ୍ତ ହୋଇ
ପହଂଚିବା ହୁଏ
ହେଲେ, ଯଂତ୍ରଣାର ଆର୍ତ୍ତ ଶୁଣିବ କିଏ ?
ଏତେ ବଧିରତା ପରେ
ଶୁଣିବବା କିଏ ?

ଯେ ଯା' ବାଟରେ, ସ୍ୱାର୍ଥରେ
ଖଜୁରୀ ଗଛତଳ ଘର
ସୁରକ୍ଷିତ କି ସେ ଏ ଯାଏଁ।
ଅଣାୟତ୍ତ ପବନର ହିଲ୍ଲୋଳରେ
ଘର ମୋର ଚିରକାଳ, ରହିବା ଶଂକାରେ।

◆

## ଝଡ଼

**ବେ**ଳେବେଳେ ଏମିତି ହୁଏ
ପବନ ନଥାଇ ଆସେ ଝଡ଼
ଭାଂଗେ ନିଡ଼
ହୃଦୟରେ ଭରେ ହାହାକାର
ଦାରୁଣ ଦଇବକୁ ଦେଇ ଦୋଷ
ଇଚ୍ଛାମତେ ସମୟକୁ ଶୋଧିଯାଏ
ଅବୁଝା ମଣିଷ ।

କିଏ ଜାଣିଥାଏ ଏମିତି ହେବବୋଲି
ଜୀବନରେ ଅଚାନକ ଛାଇଯାଏ
ଅମାବାସ୍ୟାର ଅଂଧାର
ହଜିଯାଏ ସବୁ ସଂଭାବନାର ସ୍ୱର
ଲିଭିଯାଏ ଉଜ୍ଜ୍ୱଳ ଆଲୋକ ।

ହଁ...ବେଳେବେଳେ
ଏମିତି ବି ମୁହୂର୍ତ୍ତ ଆସେ
ଯିଏ କି ବିଂଚି ଦିଏ
ଦୁଃଖ, କ୍ଷୋଭ, ତିତିକ୍ଷା
ଓ ପ୍ରତାରଣାର ମଂତ୍ର
ଯାହାକି ବଜାଇଦେଇ ମୃତ୍ୟୁ ମାଂଗଳିକ।

ତଥାପି ଝୁରିବା ହୁଏ
ଯଂତ୍ରଣାର ତିକ୍ତତାରେ କ୍ଷତାକ୍ତ ହୋଇ
ସାଧାରଣ ଜୀବନ ଜୀଇଁବାକୁ ହୁଏ।

ତା'ପରେ କି ମନ ବୁଝିଯାଏ
ଆଉ କି ଜୀବନ ସରଳତାର ଗୀତ ଗାଏ ?
ଝଡର ବ୍ୟୁତ୍‌ପାତରେ ଆଂଦୋଳିତ ଜୀବନ
ଅନେକ ବାଡ଼ ଡେଇଁବାପରେ
ସବୁକୁ ଖିନ୍‌ଭିନ୍ କଲା ପରେ
ଆଉ କି ଆସିପାରେ "ଝଡ"।

ଛାତିତଳେ ଅଲିଭା ଛାପ ଦେଇଯାଏ
ଅଟକାଇ ଦେଇ ହୁଏନା "ଝଡ"କୁ
ଯିଏ ଖାଲି ଜୀବନ ଯଂତ୍ରଣାକୁ ଗୁନ୍ଥି
ବିଦ୍ୱେଷର କଥା କୁହେ।



# ଅସିଦ୍ଧ କାମନା

ଝର୍କାକୁ ତୋର ଯେତେ ବଂଦକର କହିଲେ ବି
ରଖିଦେଲୁ ନା ଅଧାଖୋଲା,
ଏଇ ପଂକିଳ ପୃଥିବୀରେ
କେମିତି ଭାବିଲୁନି ପଶିଆସିବ ତୋ
ଅଧାଖୋଲା ଝର୍କା ବାଟଦେଇ ଜର୍ଜରିତ କାମନା।

ମଥାରେ ଭରିଛୁ ସିଂଦୂର ବୋଲି
ମାନେ ନାହିଁ ବାରବାର
ଧରିବାକୁ ଗର୍ଭ
ଅନାୟାଶରେ ଛାଡ଼ିଦେବୁ ପୃଥିବୀ କୋଳକୁ
ଅନାଗତର ଆଉ ଏକ
ଯଂତ୍ରଣାକ୍ତ ସାରାଂଶ।

ପ୍ରଥମ ଗର୍ଭକୁ ଧର୍ମର ଦ୍ୱାହି ଦେଲାପରେ
ଅଧିକ ସଂଚରିତ ହୁଏ କାମନା
ଏଣୁ ଆଜି ଏତେ ଉଷ୍ମଲାଗେ
ଭାରିଭାରି ଲାଗେ ଜାଗତିକ ଚେତନା।



# ନିଶ୍ୱାସ ବଦଳିବା ପରେ

ନିଶ୍ୱାସ ବଦଳିବା ପରେ
ହଜିଯାଏ ବିଶ୍ୱାସ
ଆତ୍ମୀୟତାର ମୋହ
ସ୍ନେହର ଅବିର
ନା, ଏପରି ମୃତ୍ୟୁର ବିବରକୁ
ଆପଣାର କରି ତ ନଥିଲି
କୁରୁ ସଭାରେ ନିଚ୍ଛକ କେଶକୁ
ରକ୍ତରେ ଧୋଇବା ସଂକଳ୍ପ ନଥିଲା
କି ପଂଚ ମହାପୁରୁଷର କାମନା ବି ନଥିଲା
ଜୀବନକୁ ପୋଡ଼ିବାକୁ
କୁରୁକ୍ଷେତ୍ର ପଡ଼ିଆକୁ ଓହ୍ଲାଇ ନଥିଲି ।

ନା' ଥିଲା ଜୀବନ, ନା' ଥିଲା ମୃତ୍ୟୁ
ନା' ଥିଲା ସମୟ
ଜୀବନ ରାସ୍ତାରେ ବାଟ ଚାଲୁଚାଲୁ
ନିଶ୍ୱାସ ଫୁଂକୁ ଫୁଂକୁ
କେତେବେଳେ ଜୀବନ ବଂଚିଗଲି !

◆

# ଆଲୁଅର ଯାତ୍ରା

ଶବ୍ଦମାନେ ଯୋଡ଼ିଯାଡ଼ି ହୋଇ
ବାଟକୁ ଦେଖାଂତି
ଅବାଟରେ ଗୋଡ଼ ଖସିଯିବା ଭୟରେ
ଆଲୁଅରେ ଯାତ୍ରା କରଂତି ।

ସେମାନେ ହେଇପାରଂତି
ନୀଡ଼ଭଂଗା ପକ୍ଷୀ
ଗୁହାଳ ମୁହାଁ ବାଛୁରୀ
ପାଗଳ ପ୍ରେମିକା
ଅବା ବୟସ୍କ ପୁରୁଷ ।



# ଆତ୍ମବିଶ୍ୱାସ

ନିଜ ଉପରେ ଭରସା ନଥିବା ମଣିଷ
ଦହଗଂଜ ହୁଏ,
ଯୋଖିଦେଇ ପାରେନା
ଆପଣା ଛାଏଁ ଆତ୍ମସ୍ଥ ହେବାର ଭାବ।
ଦଲକାଏ ପବନରେ
ଭୁଷୁଡ଼ି ପଡ଼େ ବିଶ୍ୱାସର ଘର।

ଆଉ ଏକ ଜନ୍ମ ସହ କଥାବାର୍ତ୍ତା ହେବାକୁ
ବାକିଥିବା ଶବ୍ଦ
ନୂଆନୂଆ ଭାବ ସଂଚୁଥାଏ
ଦେହର ଦେହଳୀରୁ
ଫେରିଯାଉଥିବା ଆତ୍ମା ସହ।

ଦେଖୁନ କେମିତି ହଂତସଂତ ଚାରିଆଡ଼େ
କୋଳାହଳର ବିଷାକ୍ତ ଆବର୍ତ୍ତ,
ଶୁଭ୍ର ସ୍ୱଚ୍ଛ ଦିଗଂତ ବି ଦିଶେ ଅଂଧାର
ନିଖୋଜ ସତ୍ୟ ବାଟବଣା ହୁଏ
ଅସତ୍ୟ ଦୁର୍ଗରେ ବାରଂବାର।

ଜୀବନର ସତ୍ୟ ଖୋଜୁଖୋଜୁ
ଜୀବନ ସରିସରି ଯାଏ।
ନିଜ ଉପରେ ଭରସା ନଥିବା ମଣିଷ
ଜୀଇଁଥାଇ ମଲାଗଛ ପାଲଟେ।

ଆଉ ଏକ ଜନ୍ମକୁ ଅପେକ୍ଷା ନକରି ବରଂ
ଶବ୍ଦଟିଏ ରୋପିଦିଅ
ତମାମ ବିଶ୍ୱରେ ଭରି ହେଇଯିବ
ସେ ଶବ୍ଦର ସୁଗଂଧ,
ଉଜ୍ଜ୍ୱଳ ଦିଶିବ ପ୍ରତିଟି ଦିଗ୍‌ବଳୟ।

ସ୍ମୃତି ହୋଇ ଚମକୁ ଥିବ, ଇତିହାସକୁ ଦୋହରାଇ
କେହିନା କେହି ଜଣେ ତୁମର ହେଇ ସାରିଥିବ।

ଏ ପୃଥିବୀ ଯଦି ଛୋଟ ପଡ଼ିଯାଏ
ତା' ହେଲେ ବି ନିଜକୁ ତ୍ରିଶଂକୁ କରନା
ବରଂ ପ୍ରଶସ୍ତ ଆଲିଂଗନରେ
ଭରିଦିଅ ଅବଶିଷ୍ଟ ଜୀବନ।

ସବୁ ସଂକ୍ଷିପ୍ତତାରେ
ପୋତି ଦିଅ ନୂଆ ଶବ୍ଦ
ଗଛ ହୋଇ, ଫୁଲର ସୁରଭି ଦେବ,
ଛାଇର ଆଶ୍ରୟ ଦେବ
ଚିର କାଳ ତୁମ ଉଦ୍ଦେଶ୍ୟରେ।



# ବହୁରୂପୀ ସମୟ

ବିଲୁଆ ପରି ଚତୁର
ଚିତା ପରି ଫୂର୍ତ୍ତି,
ଅଜଗରପରି ଆକର୍ଷଣୀୟ
ଜୋକପରି ଲାଗିଯିବା
ମଦାରୀ ପରି ଖେଳୁଆଡ଼
ତାଂତ୍ରିକ ସଦୃଶ ମାୟାବି
ଦୁଇମୁଂଡିଆ ସାପ ଧିରେ ଖସିଯିବ।
ସେ କେଉଁ ଲୋକକଥାର ଚରିତ୍ର ନୁହେଁ
ସେ 'ବହୁରୂପୀ ସମୟ'।

ଏହି ବହୁରୂପୀର ଅଭ୍ୟର୍ଥନାରେ
ଜଂବୁଦ୍ୱୀପର ଭାଷା, ଘର ତିଆରି ଚାଲିଛି।

ସତ୍ୟର ଗୁମାନ ଏବେ ହଜିଯାଇଛି
ଅବଶ୍ୟ ଏହି ସଂଗ୍ରାମ
ମହାଭାରତଠାରୁ ବଡ଼ ହେବ
ଯା'ର କୌଣସି ନିୟମ ରହିବ ନାହିଁ
ନା ନୀତି, ନା ବିଦୂର
ଦ୍ରୋଣ କିଂବା କୃପା ମଧ୍ୟ ନୁହେଁ
ହୁଏତ ବଂଚିଥିବେ ଶକୁନି ଓ କୃଷ୍ଣ,
ଏବଂ ମରିବେ ଅଶ୍ୱସ୍ଥାମା,
ଧୃତରାଷ୍ଟ୍ର ଏବଂ ଯୁଧିଷ୍ଠିର
ସଂଜୟ ହୋଇ ତଟସ୍ଥ ରହିହେବନି ।
କୌଣସି ଯୁଯୁସ୍ତୁ ଯଦି ରଥରେ ଅଛଂତି
ତେବେ ସମ୍ଭବତଃ, କୁରୁକ୍ଷେତ୍ର ବଦଳିବ।



# ବାପା

ଭିତରକୁ ଦେଖିଲି
ମିଳିଲା ଗୋଟିଏ ଶବ୍ଦ – "ବାପା"
ଯାହାଠାରୁ ଦୂରରେ ଅଛି
ବାପା ନୀତି ପ୍ରତିକ୍ଷା କରୁଥିବେ
ଚିଠି ମଧ୍ୟ ଲେଖିପାରୁନାହିଁ
ଭାବୁଛି – କାଲି ହିଁ ବାହାରିଯିବି ଗାଁକୁ
ବିନା କିଛି ନେଇଦେଇ କାହାକୁ କିଛି ନ କହି
ସକାଳୁ ଉଠିବି ବାସି ମୁହଁରେ
ବସ ଧରି କାଲି ଚାଲିଯିବି ଗାଁ
ସେଠି ବାପା ଅଛଂତି,
ଅଛି ମୋର ପିଲାଦିନ
ଏବଂ ବାଲିଖେଳର ଧୂଳି
ଏଠି ମହାନତା ଓ କର୍ତ୍ତବ୍ୟର ଖୋଳରେ
ଉବୁଟୁବୁ ଲାଗିଲାଣି।

ଗୋଟିଏ ଦୁଃଖ କଂଟା ପରି
ଭିତରେ ଭିତରେ ଫୋଡି ହେଉଛି
ଲେଖିବା ପାଇଁ ଯେବେ ଅଂଡାଳୁଛି
କେବଳ ଗୋଟିଏ ଶବ୍ଦ "ବାପା"
ଯାହାଠାରୁ ଦୂରରେ ଅଛି ।

ପିଲାଦିନୁ ଦେଖୁଛି ବାପା ନିଜକୁ ଆହୁତି ଦେବା
ହୋମ କରିବା ନିଜ ଜୀବନର
ଶାସନ ଓ ଶିକ୍ଷା ଭିତରେ ତର୍ପଣ କରିବା
ସଂପର୍କକୁ ଜାବୁଡ଼ି ଧରିବା
ଭଲମଂଦ କହୁ କହୁ ଭାବବିହ୍ୱଳ ହେବା
ସମସ୍ତଂକ ବିଶ୍ୱାସରେ ନିଜକୁ ହଜାଇବା
ଏତେ ଦୂରରେ ଆଜି ଭିତରେ "ବାପା"
କେବଳ ଗୋଟିଏ ଶବ୍ଦରେ ।

◆

# ଆସ କାନ୍ଦି ଶିଖିବା

କିଏ କେବେ ହସିକି ଆସିଛି କି ପୃଥିବୀକୁ ?
ସମସ୍ତେ ପ୍ରଥମେ କାନ୍ଦିଛନ୍ତି
ମାଆର ଗର୍ଭରୁ ବାହାରିବା ପରେ ।
ଜନ୍ମରୁ ଯଦି କାନ୍ଦିବା ଶିଖିଛ
ତେବେ କ୍ଷଣିକ ହସକୁ ସାଉଁଟିବାର କି ପ୍ରୟୋଜନ ।
ଜାଣିରଖ ଆଉ ଥରେ କାନ୍ଦିବ
ଏଣୁ ବେଶୀ ଯୋରରେ ହସନି
ବେପରୱାରେ ଜୀବନକୁ ଫିଂଗନି ।

ଏମିତି ବେଖାତିର ଭାବେ ବଂଚୁଛ ବୋଲି ତ
ଦୁଃଖ ଆବୋରୁଛି
ଆଖିରେ ମେଂଚାଏ ଲୁହ ଭରି
ଯୋଗମାୟା ହସୁଛି ।

କାହିଁକି ନା ସେ ଜାଣେ
ତୁମେ ତା' ହାତର ଖେଳଣା
ଏଣୁ ତ କେତେବେଳେ କାଂଦିପୁଣି ହସୁଛ
ଯେମିତି ମାୟାରେ ବାୟା ହେଉଛ।

ଯିଏ ମାଆ ଗର୍ଭରୁ ଆସିବାବେଳେ କାଂଦକୁ ଶୁଣିଛି
ସେ ସବୁବେଳେ କାଂଦିବାକୁ ଚାହେଁ
କୁଂଡି ପରି ସୁଖକୁ ତିରସ୍କାର କରେ
କାଂଦକୁ ମାଗି କାଳକାଳ ହସୁଥାଏ।

◆

# ବାଇ ଚଢ଼େଇ

ବିଜୁଳି ତାରରେ ଘର କରେ
ଦେଖତ ବାଇ ଚଢ଼େଇର ସାହସ
ଦୂର ଅଦୂରରୁ କୁଟା ଆଣି
ଗଢ଼େ ଘର, ଭାଂଗେ ନୀଡ
କେଡ଼େ ତା'ର ଧୈର୍ଯ୍ୟ
ତେବେ ବି ଭୟ ନଥାଏ
ଶଂକା ନଥାଏ
ବିଜୁଳିର,
ପବନର,
ପାଣିର,
ଖରାର
କି' ଦି ଗୋଡ଼ିଆର।

ଜୀବନକୁ ପାଣି ଛଡ଼ାଇ
ଧୈର୍ଯ୍ୟ ଓ ସାହସ ଜୁଟାଉଥିବା
ବାଇ ଚଢ଼େଇକୁ ଦେଖ
ଜୀବନ ପରି ଜୀବନଟେ ବଂଚ
ବିନା ବଂଚନାରେ।

◆

# ଜିଦ୍

ଝିଅ ଜିଦ୍ କରେ
ବସିବାକୁ ଝରକା ପାଖକୁ
ଚାଲୁଥିବା ଟ୍ରେନରେ
ବୃଦ୍ଧ ଖସିଲେ ନିଜ ବସିଥିବା ସ୍ଥାନରୁ
ଝିଅ ମାଆକୁ ବସାଇବ ପାଖରେ
ବୃଦ୍ଧ ପୁନଶ୍ଚ ଖସିଲେ
ଆଉଟିକେ ଯାଗା ଛାଡ଼ିଲେ
ଝିଅ ଚୁପ୍ ରହିଲାନି
ପୁଣି ଚାହୁଁଛି ପାଖରେ ବସିବେ ବାପା
ନୂଆ ପିଢ଼ିର ମାନ ରଖିବାକୁ
ବୃଦ୍ଧ ନିଜ ସିଟ୍‌ରୁ ଉଠି ହେଲେ ଠିଆ।

◆

ବେପଥୁ ବେହାଗ



## ସୁନୀତି ମୁଣ୍ଡଙ୍କ ଅନ୍ୟାନ୍ୟ କୃତି:

ପର୍ଦ୍ଦାପଛର ଚର୍ଯ୍ୟାପଦ (କବିତା)
ଶବ୍ଦ ଖେଳ (କବିତା)
ଯେତେସବୁ ସକାଳ (କବିତା)
ଦସ୍ତାବିଜ୍ (କବିତା)
ଝିଅ (କବିତା)
ଅନୁଷ୍ଟୁପ (ଗଳ୍ପ)
ଛାଇ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ)
ଅଭିଶପ୍ତା (ଉପନ୍ୟାସ)
ଭାଲେଣ୍ଟାଇନ୍ (ଉପନ୍ୟାସ)
ବ୍ରେଭ୍‌ର ଦୁଃଖ (ଉପନ୍ୟାସ)
ଅଗରବତୀର ଘର (ଉପନ୍ୟାସ)
ମାଟ୍ରିମନି ଡଟ୍ କମ୍ (ଉପନ୍ୟାସ)
ଜିଗୋଲୋ (ଉପନ୍ୟାସ)
ବଣ୍ଟୁ ଓ ଅନ୍ୟାନ୍ୟ ଗଳ୍ପ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୧ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୨ (ଅନୁବାଦ)
ରାଜସ୍ଥାନ ଏକ ପର୍ଯ୍ୟାଲୋଚନା (ଭ୍ରମଣ)
ଆଳାପ (ସାହିତ୍ୟ ବିନିମୟ)




₹ 50 /-

**Bepathu Behaga**
Collection of poetries by **Suniti Mund**

Dakshya Books
*(A unit of dakshya venture pvt. ltd.)*

Cover design : Nilamadhab Das